ବୃହତ୍

# ଚାଣକ୍ୟ ଶ୍ଲୋକ

( ନୂତନ ମୁଦ୍ରଣ )

ପ୍ରକାଶକ - **ଧର୍ମ ଗ୍ରନ୍ଥ ଷ୍ଟୋର**



ପ୍ରାପ୍ତିସ୍ଥାନ—**ଧର୍ମଗ୍ରନ୍ଥ ଷ୍ଟୋର**

ପ୍ରୋପ୍ରାଇଟର—**ଶ୍ରୀ ବିଦ୍ୟାଧର ସାହୁ**

ଅଲିଶାବଜାର, କଟକ-୨

ଫୋନ୍ ନଂ-୨୪୭୯୭

**ମୂଲ୍ୟ—ପଚସ୍ତରୀ ପଇସା ମାତ୍ର**

# ଚାଣକ୍ୟ ଶ୍ଳୋକ

## ବା

## ଚାଣକ୍ୟ ସାରସଂଗ୍ରହ

ନାନାଶାସ୍ତ୍ରୋଦ୍ଧୃତଂ ବକ୍ଷେ ରାଜନୀତି ସମୁଚ୍ଚୟଂ ।
ସର୍ବବୀଜମିଦଂ ଶାସ୍ତ୍ରଂ ଚାଣକ୍ୟଂ ସାରସଂଗ୍ରହଂ । ୧ ।

ନାନାଶାସ୍ତ୍ର ଶ୍ରବଣରୁ ସଂଗ୍ରହ କରଣ । ରାଜନୀତି ସମୂହକୁ କରୁଛି ବଖାଣ । ସମସ୍ତ ଶାସ୍ତ୍ରର ମୂଳ ଚାଣକ୍ୟ ଅଟଇ । ସାର-ସଂଗ୍ରହ ବୋଲଣ ନାମ ଅଛି ହୋଇ । ୧ ।

ମୂଳସୂତ୍ରଂ ପ୍ରବକ୍ଷ୍ୟାମି ଚାଣକ୍ୟେନୋ ଯଥୋଦିତଂ
ଯସ୍ୟ ବିଜ୍ଞାନମାତ୍ରେଣ ମୂର୍ଖୋ ଭବତି ପଣ୍ଡିତଃ । ୨ ।

ଯେଉଁପରି କହିଥିଲେ ଚାଣକ୍ୟ ପଣ୍ଡିତ । ସେ ମୂଳ ସୂତ୍ରକୁ ଲୋକେ କରିବା ବ୍ୟକତ । ଯାହା ଜାଣିଲେ ଶୁଣିଲେ ଜ୍ଞାନ ଜାତ ହେବ । ମୂର୍ଖରୁ ମୂର୍ଖତା ଯାଇ ପଣ୍ଡିତ ହୋଇବ । ୨ ।

ମାଣିକ୍ୟମିବ ଚାଣକ୍ୟ କଣ୍ଠେ ଗୃହ୍ଣାତି ଯୋ ନରଃ ।
ସପୂଜ୍ୟଃ ସତତଂ ଲୋକେ ଦେବେ ବାଚସ୍ପତି ଯଥା । ୩ ।

ମାଣିକ୍ୟ ସଦୃଶ ଚାଣକ୍ୟକୁ ହାର କରି । କଣ୍ଠସ୍ଥ କରଇ ଯେତୁ ଅତି ଯତ୍ନ କରି । ସବୁଠାରେ ପୂଜା ତାର ନିଶ୍ଚୟ ହୁଅଇ । ଦେବ ମଧ୍ୟେ ବୃହସ୍ପତି ଯଥା ପୂଜା ପାଇ । ୩ ।

ବିଦ୍ୱତ୍ତ୍ୱଞ୍ଚ ନୃପତ୍ୱଞ୍ଚ ନୈବ ତୁଲ୍ୟଂ କଦାଚନ ।
ସ୍ୱଦେଶେ ପୂଜ୍ୟତେ ରାଜା ବିଦ୍ୱାନ ସର୍ବତ୍ର ପୂଜ୍ୟତେ । ୪ ।

ବିଦ୍ୟା ସଙ୍ଗେ ରାଜପଣ ନୁହଇ ସମାନ, ସମାନ କରିବା ଲୋକ ମୂର୍ଖରେ ଗଣନ । ରାଜା ପୂଜାପାଏ ସିନା ଆପଣା ସ୍ୱଦେଶରେ, ବିଦ୍ୟାବନ୍ତ ପୂଜାପାଏ ଦେଶ ବିଦେଶରେ । ୪ ।

ପଣ୍ଡିତେ ଚ ଗୁଣାସର୍ବେ ମୂର୍ଖେ ଦୋଷସ୍ତୁ କେବଳଂ ।
ତସ୍ମାନ୍ମୂର୍ଖ ସହସ୍ରେଷୁ ପ୍ରାଜ୍ଞୋ ଏକୋ ବଶିଷ୍ୟତେ । ୫ ।

ସର୍ବ ସୁଗୁଣ ପଣ୍ଡିତ ଅଟନ୍ତି ନିପୁଣ, ମନ୍ଦଗୁଣ ସବୁ ମୂର୍ଖଠାରେ ବିଦ୍ୟମାନ । ଏ ହେତୁ ସହସ୍ରେ ମୂର୍ଖ ପୂଜା ନ ପାଆନ୍ତି, ମାତ୍ର ଗୋଟିଏ ପଣ୍ଡିତ ବହୁ ପୂଜା ପାଆନ୍ତି । ୫ ।

ମାତୃବତ୍ ପରଦାରେଷୁ ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍ ।
ଆତ୍ମବତ୍ ସର୍ବଭୂତେଷୁ ଯଃ ପଶ୍ୟତି ସ ପଣ୍ଡିତଃ । ୬ ।

ପରନାରୀ ଦେଖି ଯେହୁ ମଣେ ମାତା ସମ, ଗୋଡ଼ ମାଟି ପରି ମନେକରେ ପରଧନ । ସମସ୍ତ ପ୍ରାଣୀଙ୍କି ନିଜପରି ମନେକରେ, ତାହାକୁ ପଣ୍ଡିତ ବୋଲି ସଂସାର ମଧ୍ୟରେ । ୬ ।

କିଂ କୁଳେନ ବିଶାଳେନ ଗୁଣହୀନସ୍ତୁ ଯୋ ନରଃ ।
ଅକୁଳୀନୋଽପି ଶାସ୍ତ୍ରଜ୍ଞୋ ଦୈବତୈରପି ପୂଜ୍ୟତେ । ୭ ।

ଉଚ୍ଚକୁଳେ ଜାତହେଲେ କିସ ପ୍ରୟୋଜନ, ଗୁଣହୀନ ହେଲେ ସେହି ନୁହଇ କାରଣ । ନୀଚକୁଳେ ଜନ୍ମହୋଇ ହେଲେ ସୁପଣ୍ଡିତ, ତାହାକୁ ପୂଜା କରନ୍ତି ଦେବତା ସମସ୍ତ । ୭ ।

ରୂପ ଯୌବନସମ୍ପନ୍ନା ବିଶାଳ କୁଳସମ୍ଭବାଃ ।
ବିଦ୍ୟାହୀନ ନ ଶୋଭନ୍ତେ ନିର୍ଗନ୍ଧାଇବ କିଂଶୁକା । ୮ ।

ଉଚ୍ଚବଂଶେ ଜନ୍ମି ରୂପ ଯୌବନ ଶୋଭନ, ହୋଇଲେ କି ହେବ ଯେବେ ହୁଏ ବିଦ୍ୟାହୀନ । ଯେପରି ପଳାଶ ପୁଷ୍ପ ଦିଶେ ମନୋହର, ମାତ୍ର ଗନ୍ଧହୀନ ହେତୁ ନୁହଇ ଆଦର । ୮ ।

ନକ୍ଷତ୍ରଂ ଭୂଷଣଂ ଚନ୍ଦ୍ରୋ ନାରୀଣାଂ ଭୂଷଣଂ ପତି ।
ପୃଥିବୀ ଭୂଷଣଂ ରାଜା ବିଦ୍ୟା ସର୍ବସ୍ୱ ଭୂଷଣଂ । ୯ ।

ନକ୍ଷତ୍ରଗଣେ ଭୂଷଣ ଚନ୍ଦ୍ରମା ଯେପରି, ନାରୀମାନଙ୍କ ଭୂଷଣ ପତି ସେହିପରି । ରଜା ସିନା ପୃଥିବୀରେ ଅଟଇ ଭୂଷଣ, ସକଳ ସ୍ଥାନେ ଭୂଷଣ ଅଟଇ ବିଦ୍ୱାନ । ୯ ।

ମାତା ଶତ୍ରୁ ପିତା ବୈରୀ ଯେନ ବାଳ ନ ପାଠିତଃ ।
ସଭାମଧ୍ୟେ ନ ଶୋଭନ୍ତେ ହଂସ ମଧ୍ୟେ ବକ ଯଥା । ୧୦ ।

ଯେଉଁ ମାତା ପିତା ବାଳକଙ୍କୁ ନ ପଢ଼ାନ୍ତି, ମାତା ଶତ୍ରୁ ପର ପିତା ବୈରୀ ତୁଲ୍ଯ ହୋନ୍ତି । ମୂର୍ଖ ପୁତ୍ର ସଭାମଧ୍ୟେ ଶୋଭା ଯେ ନ ପାଏ, ଯେସନ୍ତେ ହଂସଙ୍କ ମଧ୍ୟେ ବକ ଦେଖାଯାଏ । ୧୦ ।

ବରମେକୋ ଗୁଣୀ ପୁତ୍ରଃ ନ ଚ ମୂର୍ଖ ଶତୈରପି ।
ଏକଶ୍ଚନ୍ଦ୍ର ସ୍ତମୋହନ୍ତି ନ ଚ ତାରା ଗଣୈରପି । ୧୧ ।

ଗୋଟିଏ ପୁତ୍ର ହୋଇବ ମାତ୍ର ଗୁଣବାନ, ଶତ ମୂର୍ଖ ପୁତ୍ର ହେଲେ କିସ ପ୍ରୟୋଜନ । ଏକ ଚନ୍ଦ୍ର ଉଦେ ହୋଇ ଅନ୍ଧକାର ନାଶେ, ଲକ୍ଷ ଲକ୍ଷ ତାରା ଥାଇ କି ହେବ ଆକାଶେ । ୧୧ ।

ଲାଳୟେତ୍ ପଞ୍ଚବର୍ଷାଣି ଦଶବର୍ଷାଣି ତାଡ଼ୟେତ୍ ।
ପ୍ରାପ୍ତେ ତୁ ଷୋଡ଼ଶେବର୍ଷେ ପୁତ୍ରଂ ମିତ୍ରଂ ଭଦାଚରେତ୍ । ୧୨ ।

ପାଞ୍ଚବର୍ଷ ପର୍ଯ୍ୟନ୍ତେ କରିବ ଲାଳନ, ତହୁଁ ଦଶବର୍ଷ ଯାଏ କରିବ ତାଡ଼ନ । ଷୋଳ ବରଷ ପୁତ୍ରଙ୍କୁ ଯେତେବେଳେ ହେବ ପୁତ୍ରଠାରେ ମିତ୍ର ଭାବ ତହୁଁ ଆଚରିବ । ୧୨ ।

ଏକେନାପି ସୁବୃକ୍ଷେଣ ପୁଷ୍ପିତେନ ସୁଗନ୍ଧିନା ।
ବାସିତଂ ତଦ୍‌ବନଂ ସର୍ବଂ ସୁପୁତ୍ରେଣ କୁଳଂ ଯଥା । ୧୩ ।

ସୁଗନ୍ଧ ପୁଷ୍ପ ବୃକ୍ଷେକ ଥିଲେ ବନସ୍ଥରେ, ସୁବାସରେ ବନଯାକ ଆମୋଦିତ କରେ । ସେପରି ସୁପୁତ୍ର ଏକ ହେଲେ ବଂଶେ ଜାତ, କୁଳ ଉଜ୍ଜ୍ୱଳ କରଇ ଏହା ସୁନିଶ୍ଚିତ । ୧୩ ।

ଏକେନାପି କୁବୃକ୍ଷେଣ କୋଟରସ୍ଥେନ ବହ୍ନିନା ।
ଦହ୍ୟତେ ତଦ୍‌ବନଂ ସର୍ବଂ କୁପୁତ୍ରେଣ କୁଳଂ ଯଥା । ୧୪ ।

ଗୋଟିଏ କୁବୃକ୍ଷ ଥିଲେ କାନନ ମଧ୍ୟରେ, କୋଟର ଅଗ୍ନିରେ ବନ ଭସ୍ମୀଭୂତ କରେ । ସେହିପରି କୁଳାଙ୍ଗାର ପୁତ୍ର ଜନମିଲେ, ଧନ ମାନ ନାଶି ବଂଶ ବୁଡ଼ାଏ ସେ ଭଲେ । ୧୪ ।

ଦୂରତଃ ଶୋଭତେ ମୂର୍ଖୋ ଲମ୍ବଶାଠ ପଟାବୃତଃ ।
ତାବଚ ଶୋଭତେ ମୂର୍ଖୋ ଯାବତ୍ କିଞ୍ଚି ନଭାଷତେ । ୧୫ ।

ଲମ୍ବ ସାଢ଼ି ପିନ୍ଧି ମୂର୍ଖ ଦୂରୁ ଶୋଭା ଦିଶେ, ଯେ ପର୍ଯ୍ୟନ୍ତ କାହାକୁ କଥା ସେ ନ ଭାଷେ । କଥା କହିବା ମାତ୍ରକେ ଜଣା ପଡ଼େ ଗୁଣ, ଗର୍ଜରବ ପଣ ତାର ହୁଏ ଅକାରଣ । ୧୫ ।

ବିଷାଦପ୍ୟମୃତଂ ଗ୍ରାହ୍ୟମ୍ ମେଧ୍ୟାଦପି କାଞ୍ଚନଂ ।
ନୀଚାଦପ୍ୟୁତ୍ତମାଂ ବିଦ୍ୟାଂ ସ୍ତ୍ରୀରତ୍ନଂ ଦୁଷ୍କୁଳାଦପିଃ । ୧୬ ।

ବିଷ ମଧ୍ୟରୁ ଅମୃତ ଗ୍ରହଣ କରିବେ, ବିଷ୍ଠାରେ ସୁବର୍ଣ୍ଣ ଥିଲେ ତାହାକୁ ତୋଳିବେ । ନୀଚ ଲୋକଠାରୁ ଭଲ ବିଦ୍ୟାକୁ ଶିଖିବ, ଗୁଣବନ୍ତ ନାରୀ ନୀଚକୁଳେ ଥିଲେ ନେବ । ୧୬ ।

ଉତ୍ସବେ ବ୍ୟସନେ ଚୈବ ଦୁର୍ଭିକ୍ଷେ ଶତ୍ରୁ ବିଗ୍ରହେ ।
ରାଜଦ୍ୱାରେ ଶ୍ମଶାନେଚ ଯ ତିଷ୍ଠନ୍ତି ସ ବାନ୍ଧବଃ । ୧୭ ।

ଉତ୍ସବେ ବିପଦେ ପୁଣି ଦୁର୍ଭିକ୍ଷ କାଳରେ, ଶତ୍ରୁର ଦମନ କିବା ଶ୍ମଶାନ ଭୂମିରେ । ବିପଦେ ବିପଦ ଜ୍ଞାନ ଉତ୍ସବେ ଉତ୍ସବ, ଯେ ସମାନ ଜ୍ଞାନ କରେ ସେହି ଯେ ବାନ୍ଧବ । ୧୭ ।

ପରୋକ୍ଷେ କାର୍ଯ୍ୟହନ୍ତାରଂ ପ୍ରତ୍ୟକ୍ଷେ ପ୍ରିୟବାଦିନଂ ।
ବର୍ଜ୍ଜୟେତ୍ତାଦୃଶଂ ମିତ୍ରଂ ବିଷକୁମ୍ଭଂ ପୟୋମୁଖଂ । ୧୮ ।

କହଇ ପ୍ରିୟ ମଧୁର କଥାକୁ ଆଗରେ, ଅନ୍ତର ହୋଇଲା ମାତ୍ରେ ବଞ୍ଚନା କରେ । ବିଷକୁମ୍ଭ ମୁଖେ ସୁଧା ରଖିଲା ପ୍ରକାର, ଏପରି ମିତ୍ରକୁ ଆଗେ ପରିତ୍ୟାଗ କର । ୧୮ ।

ଶତ୍ରୁ ଦୁଷ୍ଟଞ୍ଚ ମିତ୍ରଂ ଯଃ ପୁନଃ ସନ୍ଧାତୁ ମିଚ୍ଛତି ।
ସମୃତ୍ୟୁମୁପଗୃହ୍ଣାତି ଗର୍ଭମଶ୍ୱତରୀ ଯଥା । ୧୯ ।

ଯାହା ସଙ୍ଗତେରେ ଥରେ ଶତ୍ରୁତା ହୋଇବ, ପୁନରପି ତା ସହିତ ଭାବ ନ କରିବ । ଅଶ୍ୱତରୀ ଗର୍ଭେ ଯେଉଁ ଦଶାକୁ ଲଭଇ, ସେପରି ଆପଣା ମୃତ୍ୟୁ ସ୍ୱହସ୍ତେ ଆଣଇ । ୧୯ ।

ନ ବିଶ୍ୱ ସେଦବିଶ୍ୱସ୍ତଂ ମିତ୍ରଞ୍ଚାପି ନ ବିଶ୍ୱସେତ୍ ।
କଦାଚିତ୍ କୁପିତଂ ମିତ୍ରଂ ସଙ୍ଗଦୋଷ ପ୍ରକାଶୟେତ୍ । ୨୦ ।

ଅବିଶ୍ୱାସୀଙ୍କି ବିଶ୍ୱାସ କେବେ ନ କରିବ, ମିତ୍ର ଆଗେ କେବେ ଗୁପ୍ତ କଥା ନ କହିବ । ଦୈବବଳେ ଯଦି କେବେ ବିବାଦ ହୁଅଇ, ବିଶ୍ୱାସ କଥାକୁ କହି ପ୍ରମାଦ ଘଟଇ । ୨୦ ।

ଜାନୀୟାତ୍ ପ୍ରେଷଣେ ଭୃତ୍ୟାନ୍ ବାନ୍ଧବାନ୍ ବ୍ୟସନାଗମେ ।
ମିତ୍ରଞ୍ଚା ପଦି କାଳେ ଚ ଭାର୍ଯ୍ୟାଞ୍ଚ ବିଭବ କ୍ଷୟେ । ୨୧ ।

କାର୍ଯ୍ୟ ସମୟେ ଜାଣିବ ଭୃତ୍ୟ ବ୍ୟବହାର ଦୁଃଖ ସମୟେ ଜାଣିବ ବନ୍ଧୁତା ବେଭାର । ବିପଦ କାଳେ ଜାଣିବ ମିତ୍ରର ମିତ୍ରତା, ଧନ ଶେଷେ ବୁଝିବ ଯେ ସ୍ତ୍ରୀର ଆତ୍ମପ୍ରୀତା । ୨୧ ।

ଉପକାର ଗୃହୀତେନ ଶତ୍ରୁଣା ଶତ୍ରୁ ମୁର୍ଦ୍ଧରେତ୍ ।
ପାଦଲଗ୍ନ କରସ୍ଥେନ କଣ୍ଟକେ ନୈବ କଣ୍ଟକଂ । ୨୨ ।

ଶତ୍ରୁ ବଶକର ଉପକାରକୁ କରିଣ, ତା ସାହାଯ୍ୟେ ଅନ୍ୟ ଶତ୍ରୁ କରିବ ଦଳନ । ଯେପରି ପାଦରେ କଣ୍ଟା ବୋନ୍ଧିଲେ ଗୋଟିଏ, ଅନ୍ୟ କଣ୍ଟା ସାହାଯ୍ୟେ ବାହାର କରାଯାଏ । ୨୨ ।

ନ କଶ୍ଚିତ୍ କସ୍ୟ ଚିନ୍ମିତ୍ରଂ ନ କଶ୍ଚିତ୍ କସ୍ୟଚିଦ୍ରିପୁଃ ।
କାରଣେନ ହି ଜାନାତି ମିତ୍ରାଣି ରିପବସ୍ତଥା । ୨୩ ।

ସଂସାରରେ ଶତ୍ରୁ କେହି ନୁହଇ କାହାର, କେହି କାହାର ମିତ୍ର ନୁହେଁ ଜାଣ ସୁଜ୍ଜନର । କାର୍ଯ୍ୟକାଳେ ଶତ୍ରୁ ମିତ୍ର ପଡ଼ଯାଏ ଜଣା, ସୁଜ୍ଞମାନେ ବୁଝନ୍ତୁ ତା କରି ବିବେଚନା । ୨୦ ।

ଦୁର୍ଜନଃ ପ୍ରିୟବାଦୀ ଚ ନୈବ ବିଶ୍ୱାସ କାରଣଂ ।
ମଧୁ ତିଷ୍ଠତି ଜିହ୍ୱାଗ୍ରେ ହୃଦୟେ ତୁ ହଳାହଳଂ । ୨୪ ।

ଦୁଷ୍ଟଲୋକ ଯେବେ ପ୍ରିୟ ବଚନ କହିବ, କେତେବେଳେ ତା କଥାରେ ବିଶ୍ୱାସ ନ ଦିବ । ଦୁଷ୍ଟଲୋକ ଦୁଃଖେ ମିଷ୍ଟ ବଚନ କହଇ, ହୃଦରେ କପଟ ରଖି ସକଳ ନାଶଇ । ୨୪ ।

ଦୁର୍ଜ୍ଜନଃ ପରିହର୍ତ୍ତବ୍ୟୋ ବିଦ୍ୟାଳଙ୍କୃତୋଽପିସନ୍ ।
ମଣିନା ଭୂଷିତଃ ସର୍ପଃ କମସୌ ଭୟଙ୍କର । ୨୫ ।

ଦୁଷ୍ଟଲୋକ ଯେବେ ବିଦ୍ୟା ପଢ଼ିଣ ପଣ୍ଡିତ, ହେଲେ ମଧ୍ୟ ତାର ସଙ୍ଗ ଛାଡ଼ିବା ଉଚିତ । ବିଷଧର ସର୍ପ ମୁଣ୍ଡେ ମଣି ଥିଲେ ରହି, ତାର ଦନ୍ତଘାତରେ କି ମୃତ୍ୟୁ ନ ହୁଅଇ । ୨୫ ।

ସର୍ପ କ୍ରୂରଃ ଖଳ କ୍ରୂରଃ ସର୍ପାତ୍ କ୍ରୂରତରଃ ଖଳଃ ।
ମନ୍ତ୍ରୌଷଧିବଶଃ ସର୍ପ ଖଳ କେନ ନିବାର୍ଯ୍ୟତେ । ୨୬ ।

ସର୍ପ ଦୁଷ୍ଟ, ଖଳ ଦୁଷ୍ଟ ବେନିଜନ, କିନ୍ତୁ ସର୍ପଠାରୁ ଖଳ ଦୁଷ୍ଟ ଶତେଗୁଣ । ମନ୍ତ୍ର ମହୋଷଧି ବଳେ ସର୍ପ ବଶ ହୁଏ, ହେଲେ କେତେବେଳେ ଖଳ ବଶୀଭୂତ ନୁହେଁ । ୨୬ ।

ନଦୀନାଞ୍ଚ ନଖିନାଞ୍ଚ ଶୃଙ୍ଗିଣା ଶସ୍ତ୍ରପାଣିନାଂ ।
ବିଶ୍ୱାସୋ ନୈବ କର୍ତ୍ତବ୍ୟ ସ୍ତ୍ରୀଷୁ ରାଜକୁଳେଷୁ ଚ । ୨୭ ।

ନଦୀକୁ ବିଶ୍ୱାସ କେବେ ନ କରିବ ନରେ, ନଖ ଶିଙ୍ଗ ଥିବା ପ୍ରାଣୀ ନ ଯାଅ ପାଶରେ । ଆବର ଶସ୍ତ୍ରଧାରୀକୁ ବିଶ୍ୱାସ ନ ଯିବ, ନାରୀ ପୁଣି ରାଜାକୁ ବିଶ୍ୱାସ ନ କରିବ । ୨୭ ।

ହସ୍ତୀ ହସ୍ତ ସହସ୍ରେଣ ଶତହସ୍ତେ ନ ବାଜିନଃ ।
ଶୃଙ୍ଗୀଣ ଦଶହସ୍ତେନ ସ୍ଥାନ ତ୍ୟାଗେନ ଦୁର୍ଜନ । ୨୮ ।

ହସ୍ତୀ ପାଶରୁ ସହସ୍ର ହସ୍ତ ଅନ୍ତରରେ, ଘୋଡ଼ାଠାରୁ ଯିବ ଏକଶତ ହାତ ଦୂରେ । ଶୃଙ୍ଗଥିବା ଜନ୍ତୁଠାରୁ ଦଶହାତ ଦୂରେ, ଦୁର୍ଜନ ଦେଖିଲେ ସ୍ଥାନ ଛାଡ଼ିବ ସତ୍ୱରେ । ୨୮ ।

ଆପଦାର୍ଥଂ ଧନଂ ରକ୍ଷେତ୍ ଦାରାନ୍ ରକ୍ଷେଦ୍ଧନୈରପି ।
ଆତ୍ମାନଂ ସତତଂ ରକ୍ଷେ ଦାରୈରପି ଧନୈରପି । ୨୯ ।

ଆପଦ ବିପଦ ପାଇଁ ଧନ ରଖିଥିବ, ସେହି ଧନ ଦ୍ୱାରା ପତ୍ନୀ ଯତନେ:ପାଳିବ । ବିପଦ ଆପଦ ଆସି ପଡ଼ିବା କାଳରେ, ଧନ ଦାରା ଦ୍ୱାରା ପ୍ରାଣ ରକ୍ଷେ ସହଜରେ । ୨୯ ।

ପରଦାରାନ୍ ପରଦ୍ରବ୍ୟଂ ପରବାଦ୍ୟ ପରସ୍ୟ ଚ ।
ପରହାସଂ ଗୁରୋଃ ସ୍ଥାନେ ଚାପଲ୍ୟଞ୍ଚ ବିବର୍ଜୟେତ୍ । ୩୦ ।

ପର ନାରୀ ପର ଧନ ପର ଅପବାଦ, ଛାଡ଼ିବ ନିଶ୍ଚୟ ଏହା ନୋହିଲେ ପ୍ରମାଦ । ଗୁରୁଜନଙ୍କ ଆଗରେ ଯେହୁ ହାସ୍ୟକରେ, ତାହାକୁ ଯେ ଉପହାସ୍ୟ କରନ୍ତି ସଂସାରେ । ୩୦ ।

ତ୍ୟଜେଦେକଂ କୁଳସ୍ୟାର୍ଥେ ଗ୍ରାମସ୍ୟାର୍ଥେ କୁଳଂ ତ୍ୟଜେତ୍ ।
ଗ୍ରାମଂ ଜନ ପଦାସ୍ୟାର୍ଥେ ଆତ୍ମାର୍ଥେ ପୃଥିବୀଂ ତ୍ୟଜେତ୍ ।୩୧ ।

କୁଳରକ୍ଷା ପାଇଁ ଏକ ଜଣକୁ ତେଜିବ, ଗ୍ରାମର ରକ୍ଷା ନିମନ୍ତେ କୁଳକୁ ଛାଡ଼ିବ । ଦେଶରକ୍ଷା କରିବାକୁ ତ୍ୟାଗକର ଗ୍ରାମ, ଆତ୍ମରକ୍ଷା ପାଇଁ ପୃଥ୍ୱୀ ତେଜିବ ସୁଜନ । ୩୧ ।

ଚଳତ୍ୟେକେନପାଦେନ ତିଷ୍ଠତେ କେନ ବୁଦ୍ଧିମାନ୍ ।
ମାସମୀକ୍ଷ୍ୟ ପରଂ ସ୍ଥାନଂ ପୂର୍ବମାୟତନଂ ତ୍ୟଜେତ୍ । ୩୨ ।

ପ୍ରଥମେ ଏକପାଦକୁ ଚଳେ ବୁଦ୍ଧିମାନ, ଅନ୍ୟ ପାଦ ଦେବା ପୂର୍ବ୍ବେ କରେ ଅନୁମାନ । ସେହିପରି ଅନ୍ୟ ଆଶ୍ରା ନ ଦେଖିଣ ଯେହୁ, ଏକ ଆଶ୍ରା ଛାଡ଼ି ବିପଦେ ପଡ଼ଇ ସେହୁ । ୩୨ ।

ଲୁବ୍ଧ ମର୍ଥେନ ଗୃହ୍ଣୀୟାତ୍ ସ୍ତବ୍ଧମଞ୍ଜଳି କର୍ମଣଃ ।
ମୂର୍ଖଂ ଛନ୍ଦୋଽନୁବୃତ୍ତେନ ତଥା ସତ୍ୟେନ ପଣ୍ଡିତଂ ।୩୩।

ଧନ ଦେଇ ଲୋଭୀ ଲୋକେ କରିବ ଆୟତ୍ତ, କ୍ରୋଧିକ ଜନସୁ ହାତ୍ର କର ବଶୀଭୂତ । କପଟ ବଚନେ ମୂର୍ଖ ଜନକୁ ତୋଷିବ, ପଣ୍ଡିତଙ୍କୁ ସତ୍ୟକହି ସନ୍ତୋଷ କରିବ ।୩୩।

ଅର୍ଥନାଶଂ ମନସ୍ତାପଂ ଗୃହେ ଦୁଶ୍ଚରିତାନି ଚ ।
ବଞ୍ଚନଞ୍ଚାପମାନଞ୍ଚ ମତିମାନ ନ ପ୍ରକାଶୟେତ୍ । ୩୪ ।

ଅର୍ଥ ନାଶ ମନ ଦୁଃଖ ଘର ଛିଦ୍ର କଥା, ପ୍ରତାରଣ ଅପମାନ ଆଦି ଗୋପ୍ୟ କଥା । ଅନ୍ୟସ୍ଥାନେ ବୁଦ୍ଧିମାନ ପ୍ରକାଶ ନ କରେ, ଲଜ୍ଜା ଅଛି ଭୟେ ରଖିଥାଏ ଗୋପନରେ । ୩୪ ।

ଧନଧାନ୍ୟ ପ୍ରୟୋଗେଷୁ ତଥା ବିଦ୍ୟା ଗମେଷୁ ଚ ।
ଆହାରେ ବ୍ୟବହାରେ ଚ ତ୍ୟକ୍ତ ଲଜ୍ଜା ସୁଖୀ ଭବେତ୍ । ୩୫ ।

ଟୀକା । ଧନ ଧାନ କାରବାର କଲେ, ଲଜ୍ଜା ନ କରିବ କେବେହେ ଜାଣିଥାଅ ମନେ । ବିଦ୍ୟାରେ ଆହାର ବ୍ୟବହାରରେ ଲଜ୍ଜା କଲେ, ଶେଷେ ନାନା ଦୁଃଖ କଷ୍ଟ ଲଭଇ ସେ ଭଲେ । ୩୫ ।

ଧନିନଃ ଶ୍ରୋତ୍ରିୟୋ ରାଜା ନଦୀ ବୈଦ୍ୟସ୍ତୁ ପଞ୍ଚମଃ ।
ପଞ୍ଚ ଯତ୍ର ନ ବିଦ୍ୟନ୍ତେ ତତ୍ର ବାସଂ ନ କାରୟେତ୍ । ୩୬ ।

ଧନିଲୋକ ଋଷି ରଜା ନଦୀ ବୈଦ୍ୟ ଜାଣ, ଯେଉଁ ସ୍ଥାନରେ ନାହାନ୍ତି ଏହି ପାଞ୍ଚଜଣ । ସେ ସ୍ଥାନରେ ବାସ କେବେହେ ନ କରେ ପଣ୍ଡିତ । କଲେ ଆପଦ ଘଟଇ ଏ କଥା ନିଶ୍ଚିତ । ୩୬ ।

ଯସ୍ମିନ୍ ଦେଶେ ନ ସମ୍ମାନୋ ନ ବୃତ୍ତିର୍ନଚ ବାନ୍ଧବା ।
ନ ଚ ବିଦ୍ୟାଗମ କଶ୍ଚିତ୍ ତଂ ଦେଶଂ ପରିବର୍ଜୟେତ୍ ।୩୭।

ଯେଉଁ ଦେଶେ ଗଉରବ ବୃତ୍ତି ଆଦି ନାହିଁ, ବନ୍ଧୁ ବାନ୍ଧବ ବିଦ୍ୟାବନ୍ତ ଜନ ନାହିଁ । ଏପରି ଦେଶରେ କେବେ ନ କରିବ ଘର । ଶାସ୍ତ୍ରମତେ ସେ ଦେଶକୁ ପରିତ୍ୟାଗ କର ।୩୭।

ମନସା ଚିନ୍ତିତଂ କର୍ମ ବଚସା ନ ପ୍ରକାଶୟେତ୍ ।
ଅନ୍ୟ ଲକ୍ଷିତ କାର୍ଯ୍ୟସ୍ୟ ଯତ ସିଦ୍ଧିର୍ନଜାୟତେ । ୩୮ ।

ମନ ମଧ୍ୟେ ଯେଉଁକଥା ଭାବନା କରିବ, ଅନ୍ୟଲୋକ ଆଗେ ତାହା କେବେହେ ନ କହିବ । ତୁମ୍ଭର ମନ କଥାକୁ ଅନ୍ୟ ଜଣେ ଯେବେ, ଜାଣିବ ବିଘ୍ନ ଘଟଇ କାର୍ଯ୍ୟ ନୁହେଁ କେବେ । ୩୮ ।

କୁଦେଶଞ୍ଚ କୁବୃତ୍ତିଞ୍ଚ କୁଭାର୍ଯ୍ୟା କୁନଦୀ ତଥା ।
କୁଦ୍ରବ୍ୟଞ୍ଚ କୁଭୋଜ୍ୟଂ ଚ ବର୍ଜ୍ଜୟେତ୍ ବିଚକ୍ଷଣ ।୩୯ ।

ମନ୍ଦ ଦେଶେ ଘର କରି ଜୀବିକା କରିବା, କୁନଦୀରେ ସ୍ନାନକରି କୁଭାର୍ଯ୍ୟା ରମିବା । କୁଦ୍ରବ୍ୟ ଗ୍ରହଣରେ କିମ୍ବା କୁଦ୍ରବ୍ୟ ଭୋଜନ, ନିଶ୍ଚେ ପରିତ୍ୟାଗ କର ଆହେ ସୁଜ୍ଞଜନ । ୩୯ ।

ଋଣଶେଷୋଽଗ୍ନି ଶେଷଶ୍ଚ ବ୍ୟାଧି ଶେଷସ୍ତଥୈବଚ ।
ପୁନଶ୍ଚ ବର୍ଦ୍ଧତେ ଯସ୍ମାତ୍ ସ୍ମାତ୍ ଶେଷଞ୍ଚ ବର୍ଜୟେତ୍ । ୪୦ ।

ଋଣ ମନରେଶୋଧ କରି ଶେଷ ନ ରଖିବ, ଅଗ୍ନିକୁ ଲିଭାଇ ଦେଇ ନିଃଶେଷ କରିବ । ମେତ୍ୱପରି ରୋଗର ନ ରଖିବ କଲ୍ମଷ, ରୋଗଥିଲେ ବିପଦ ଯେ ଅଟଇ ଅଶେଷ । ୪୦ ।

ଚିନ୍ତାଜ୍ୱରୋ ମନୁଷ୍ୟାଣାଂ ବସ୍ତ୍ରାଣା ମାତପୋଜ୍ୱରଃ ।
ଅସୌଭାଗ୍ୟଜ୍ୱରଃ ସ୍ତ୍ରୀଣାମଶ୍ୱାନାଂ ମୈଥୁନଂ ଜ୍ୱର । ୪୧ ।

ଚିନ୍ତା ହୁଏ ମନୁଷ୍ୟଙ୍କୁ ଜ୍ୱରର ସମାନ, ଲୁଗାକୁ ଖରା ହୁଅଇ ଜ୍ୱରପରି ଜାଣ । ନାରୀ ଭାଗ୍ୟହୀନା ହେଲେ ସେ ତାହାଙ୍କୁ ଜ୍ୱର, ମୈଥୁନ ଅଶ୍ୱେ ହୁଅଇ ଜ୍ୱର ପରକାର । ୪୧ ।

ଅସ୍ତି ପୁତ୍ରୋ ବଶେ ଯସ୍ୟ ଭୃତ୍ୟୋ ଭାର୍ଯ୍ୟା ତଥୈବଚ ।
ଅଭାବେ ସତି ସନ୍ତୋଷେ ସ୍ୱର୍ଗସ୍ଥୋଽସୌ ମହୀତଳେ । ୪୨ ।

ପୁତ୍ର ଅନୁଗତ ଚିର ବନିତା ଗୃହିଣୀ, କିଙ୍କର ସଦୃଶ ଭୃତ୍ୟ ଆଜ୍ଞାପାଳେ ପୁଣି । ଧନହୀନ ହେଲେ ସୁଦ୍ଧା ଲୁହନ୍ତି କାତର, ସେ ଗୃହ ସଂସାର ମଧ୍ୟେ ସ୍ୱର୍ଗ ପରକାର । ୪୨ ।

ଦୁଷ୍ଟା ଭାର୍ଯ୍ୟା ଶଠ ମିତ୍ର ଭୃତ୍ୟଶ୍ଚୋତ୍ତରଦାୟକଃ ।
ସସର୍ପେ ଚ ଗୃହେ ବାସେ ମୃତ୍ୟୁରେବ ନ ସଂଶୟ । ୪୩ ।

ଭାର୍ଯ୍ୟା ଯାର ଦୁଷ୍ଟା ଶଠ ମଇତ୍ର ଅଟଇ, ଭୃତ୍ୟ ହୋଇ ମୁନିବଙ୍କୁ ପ୍ରତ୍ୟୁତ୍ତର ଦେଇ । ଯେଉଁ ଗୃହ ମଧ୍ୟେ ସର୍ପ କରିଥାଇ ବାସ, ସେ ଗୃହେ ରହିଲେ ମୃତ୍ୟୁ ହୁଅଇ ଅବଶ୍ୟ । ୪୩ ।

ମାତା ଯସ୍ୟ ଗୃହେ ନାସ୍ତି ଭାର୍ଯ୍ୟା ଚ ପ୍ରିୟବାଦିନୀ ।
ଅରଣ୍ୟଂ ତେନ ଗନ୍ତବ୍ୟଂ ଯଥାରଣ୍ୟଂ ତଥା ଗୃହଂ । ୪୪ ।

ଯେଉଁ ଘରେ ମାତା ନାହିଁ ବୁଝିବା ଖବର, ଭାର୍ଯ୍ୟା ଯେବେ କଟୁକଥା କହେ ସ୍ୱାମୀଠାରେ । ସେ ଗୃହକୁ ଛାଡ଼ି ବନେ ରହିବା ଉଚିତ, ବନସ୍ତ ପରି ସେ ଗୃହ ହୁଅଇ ଲକ୍ଷିତ । ୪୪ ।

**ଋଣକର୍ତ୍ତା ପିତା ଶତ୍ରୁ ମାତା ଚ ବ୍ୟଭିଚାରିଣୀ ।**
**ଭାର୍ଯ୍ୟା ରୂପବତୀ ଶତ୍ରୁ ପୁତ୍ର ଶତ୍ରୁ ଅପଣ୍ଡିତ । ୪୫ ।**

ଋଣ କରିଥିଲେ ପିତା ଶତ୍ରୁ ସମ ହୁଏ, ମାତା ଦୋଷଚାରିଣୀ ହେଲେ ଶତ୍ରୁ ବୋଲାଯାଏ । ଭାର୍ଯ୍ୟା ସୁନ୍ଦରୀ ହୋଇଲେ ମନ ସଦା ଡର, ପୁତ୍ର ମୂର୍ଖ ହେଲେ ଶତ୍ରୁ ହୁଅଇ ନଜର । ୪୫ ।

କୋକିଳାନାଂ ସ୍ୱରୋ ରୂପ ନାରୀରୂପଂ ପତିବ୍ରତା ।
ବିଦ୍ୟା ରୂପଂ କୁରୂପାଣାଂ କ୍ଷମା ରୂପଂ ତପସ୍ୱିନାଂ । ୪୬ ।

କୋକିଳ ବିରୂପ ହେଲେ ରୂପ ତାର ସ୍ୱର, ପତିଭକ୍ତି ଗୁଣ ଅଟେ ରୂପ ନାରୀଙ୍କର । କୁତ୍ସିତ ଜନର ରୂପ ବିଦ୍ୟା ଯେ ଅଟଇ, କ୍ଷମା ଗୁଣ ତପସ୍ୱୀମାନଙ୍କ ରୂପ ହୋଇ । ୪୬ ।

ଅବିଦ୍ୟା ଜୀବନଂ ଶୂନ୍ୟଂ ଦିକଶୂନ୍ୟ ଚେନ ବାନ୍ଧବା ।
ପୁତ୍ରହୀନଂ ଗୃହଂ ଶୂନ୍ୟ ସର୍ବଶୂନ୍ୟ ଦରିଦ୍ରତା । ୪୭ ।

ବିଦ୍ୟା ନ ଜାଣିବା ଲୋକର ଜୀବନ ଶୂନ୍ୟ, ବନ୍ଧୁବାନ୍ଧବ ନ ଥିଲେ ଦିଗ ଦିଶେ ଶୂନ୍ୟ । ପୁତ୍ର ଯେଉଁ ଘରେ ନାହିଁ ଶୂନ୍ୟ ସେହି ଘର, ଦରିଦ୍ର ଲୋକର ଶୂନ୍ୟ ଅଟଇ ସଂସାର । ୪୭ ।

ଅଦାତା ବଂଶଦୋଷେଣ କର୍ମ ଦୋଷେ ଦରିଦ୍ରତା ।
ରୁଗ୍‌ଣତା ମାତୃଦୋଷେଣ ପିତୃ ଦୋଷେଣ ମୂର୍ଖତା । ୪୮ ।

ବଂଶ ଦୋଷରୁ ଅଦାତା ହୁଅନ୍ତି ଯେ ନର, ନିଜ କର୍ମଦୋଷ ଦରିଦ୍ରତା ପ୍ରାଣୀଙ୍କର । ମାତାର ଦୋଷରୁ ପୁତ୍ର ବେମାରିଆ ହୁଏ, ପିତାଙ୍କର ଦୋଷୁ ପୁତ୍ର ମୂର୍ଖତାକୁ ପାଏ । ୪୮ ।

ଗୁରୁ ରଗ୍ନି ଦ୍ୱିଜାତିନାଂ ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁଃ ।
ପତିରେକୋ ଗୁରୁ ସ୍ତ୍ରୀଣାଂ ସର୍ବସ୍ୟାଭ୍ୟାଗତୋ ଗୁରୁ । ୪୯ ।

ବ୍ରାହ୍ମଣମାନଙ୍କ ଗୁରୁ ଅଗ୍ନି ଯେ ଅଟଇ, ସମସ୍ତ ଜାତିଙ୍କ ଗୁରୁ ବ୍ରାହ୍ମଣ ବୋଲଇ । ସାଧ୍ୱୀ ନାରୀଙ୍କର ଗୁରୁ ଏକମାତ୍ର ପତି, ସମସ୍ତ ଲୋକଙ୍କ ଗୁରୁ ଅତିଥି ଅଟନ୍ତି । ୪୯ ।

ଅତି ଦର୍ପେ ହତ ଲଙ୍କା ଅତିମାନେ ଚ କୌରବା ।
ଅତିଦାନେ ବଳିର୍ବଦ୍ଧୋ ସର୍ବମତ୍ୟନ୍ତ ଗର୍ହିତଂ । ୫୦ ।

ଅତି ଗର୍ବକରି ଲଙ୍କା ରାବଣ ମରିଲା, ଅତି ଅଭିମାନେ ଦୁର୍ଯ୍ୟୋଧନ ନାଶ ଗଲା । ଅତିଦାନ ହେତୁ ବଳି ପାତାଳକୁ ଗଲେ, ସବୁ ଅମଙ୍ଗଳ ଘଟେ ଅତିଶଯ୍ୟ ହେଲେ । ୫୦ ।

ବସ୍ତ୍ରହୀନାମଳଙ୍କାର ଘୃତହୀନଞ୍ଚ ଭୋଜନଂ ।
ସ୍ତନହୀନା ଚ ଯା ନାରୀ ବିଦ୍ୟା ହୀନଞ୍ଚ ଜୀବନଂ । ୫୧ ।

ବସ୍ତ୍ର ନ ଥିଲେ ଗହଣା ଶୋଭା ନ ଦିଶଇ, ଘୃତ ନ ଥିଲେ ଭୋଜନ ତୃପତି ନୁହଇ । କୁଚହୀନ ହେଲେ ନାରୀ ନ ଦିଶଇ ଶୋଭା । ମୂର୍ଖ ହେବାଠାରୁ ଭଲ ଜୀବନ ତେଜିବା । ୫୧ ।

ଆୟୁଷ କ୍ଷଣ ଏକୋପିନ ଲଭ୍ୟ ସ୍ୱର୍ଣ୍ଣକୋଟିଭିଃ ।
ସଚେନ୍ନିରର୍ଥକଂ ନୀତଃକାନୁ ହାନିସ୍ତତୋ ଅଧିକଂ । ୫୨ ।

ଜୀବନର ଏକ କ୍ଷଣ ବୃଥାରେ କାଟିଲେ, ନ ମିଳିବ କେବେ ତାହା କୋଟିମୁଦ୍ରା ଦେଲେ । ଅମୂଲ୍ୟ ଜୀବନକୁ ବୃଥାରେ କଟାଇଲେ, ତହୁଁ ବଳି କ୍ଷତି ଆଉ ନାହିଁଟି ସଂସାରେ । ୫୨ ।

ପୁତ୍ର ପ୍ରୟୋଜନ ଦାରା ପୁତ୍ରଃ ପିଣ୍ଡ ପ୍ରୟୋଜନଃ ।
ହିତପ୍ରୟୋଜନଂ ମିତ୍ର ଧନଂ ସର୍ବ ପ୍ରୟୋଜନଂ । ୫୩ ।

ପୁତ୍ରଲାଭ ଆଶେ ଭାର୍ଯ୍ୟା କରିବା ଉଚିତ, ପୁତ୍ର ଆବଶ୍ୟକ ହୁଏ ପିଣ୍ଡର ନିମିତ୍ତ । ନିଜ ମଙ୍ଗଳ ସକାଶେ ମିତ୍ର ପ୍ରୟୋଜନ, ସକଳର କାର୍ଯ୍ୟ ଲାଗେ ପାଶେ ଥିଲେ ଧନ । ୫୩ ।

ଦୁର୍ଲ୍ଲଭଂ ପ୍ରକୃତଂ ବାକ୍ୟଂ ଦୁର୍ଲ୍ଲଭ ପୁତ୍ର ପଣ୍ଡିତଃ ।
ଦୁର୍ଲ୍ଲଭ ସଦୃଶ ଭାର୍ଯ୍ୟା ଦୁର୍ଲ୍ଲଭ ସ୍ୱଜନପ୍ରିୟଃ । ୫୪ ।

ସଂସାରେ ଅଛେ ଯେ ଦୁର୍ଲ୍ଲଭ ବଚନ । ବହୁ କଷ୍ଟରେ ମିଳଇ ପୁତ୍ର ଗୁଣବାନ । ଆପଣା ସମାନ ସ୍ତ୍ରୀ ଭାଗ୍ୟେ ଥିଲେ ପାଇ । ହିତକାରୀ ପ୍ରିୟ ବନ୍ଧୁ କଷ୍ଟରେ ମିଳଇ । ୫୪ ।

ଭୋଜ୍ୟଂ ଭୋଜନଶକ୍ତିଶ୍ଚ ରତିଶକ୍ତିବରସ୍ତ୍ରିୟଃ ।
ବିଭବୋ ଦାନଶକ୍ତିଶ୍ଚ ନାଲ୍ପସ୍ୟ ତପସ୍ୟାଫଳ । ୫୫ ।

ସୁଖାଦ୍ୟ ପଦାର୍ଥ ପୁଣି ଭୋଜନ ଶକତି, ରତିଶକ୍ତି ଆବର ଯେ ସୁନ୍ଦରୀ ଯୁବତୀ । ଦାନ ଶକ୍ତି ସମ୍ପତ୍ତି ଏ ଛଅକଥା ପୁଣି, ବହୁ ତପସ୍ୟାରେ ମିଳେ ଜାଣ ହେ ସୁଜ୍ଞାନୀ । ୫୫ ।

ଶୈଳେ ଶୈଳେ ନ ମାଣିକ୍ୟଂ ମୌକ୍ତିକଂ ନ ଗଜେ ଗଜେ ।
ସାଧବୋ ନହି ସର୍ବତ୍ର ଚନ୍ଦନଂ ନ ବନେ ବନେ । ୫୬ ।

ସବୁ ପର୍ବତରେ ଯେ ମାଣିକ୍ୟ ନ ମିଳଇ, ମୁକ୍ତା ସବୁ ହସ୍ତୀମାନଙ୍କଠାରେ ନ ଥାଇ । ସାଧୁ ଲୋକ ବାସ ନ କରନ୍ତି ସବୁସ୍ଥାନେ, ଚନ୍ଦନ ବୃକ୍ଷ ନ ଜନ୍ମଇ ସକଳ ବନେ । ୫୬ ।

ଅଶୋଚ୍ୟଃ ନିର୍ଦ୍ଧନଃ ପ୍ରାଜ୍ଞୋଽଶୋଚ୍ୟଃ ପଣ୍ଡିତବାନ୍ଧବଃ ।
ଅଶୋଚ୍ୟା ବିଧବା ନାରୀ ପୁତ୍ରପୌତ୍ର ପ୍ରତିଷ୍ଠିତାଃ । ୫୭ ।

ପଣ୍ଡିତ ନିର୍ଦ୍ଧନ ହେଲେ ଦୁଃଖୀ ନୁହନ୍ତି ତାର, ବିଦ୍ୟାବନ୍ତ ମିତ୍ର ଥିଲେ ଭାବନା ନ କର । ପୁତ୍ର ନାତି ଥିବା ନାରୀ ବିଧବା ହୋଇଲେ, ତଥାପି ନୁହଁଇ ଦୁଃଖ ସୁଖେ ସେହୁ ଚଳେ । ୫୭ ।

ଅବିଦ୍ୟା ପୁରୁଷଃ ଶୋଚ୍ୟଂ ଶୋଚ୍ୟଂ ମୈଥୁନମପ୍ରଜଂ ।
ନିରାହାରାଃ ଶୋଚ୍ୟ ପ୍ରଜାଃ ଶୋଚ୍ୟଂ ରାଜ୍ୟମନାୟକଂ । ୫୮ ।

ପୁରୁଷ ହୋଇଣ ଯେବେ ବିଦ୍ୟା ନ ଜାଣଇ, ମୈଥୁନେ ଖା କାର୍ଯ୍ୟ ଯେବେ ପୁତ୍ର ନ ଜନ୍ମଇ । ରାଜା ଥିବା ଦେଶେ ପ୍ରଜା ଉପବାସେ ମଲେ, ଏ ସବୁ କାରଣ ଦେଶ ଅରାଜକ ହେଲେ ।

କୁଳୀନୈଃ ସହ ସମ୍ପର୍କ ପଣ୍ଡିତୈଃ ସହ ମିତ୍ରତାଂ ।
ଜ୍ଞାତିଭିଶ୍ଚ ସମଂ ମେଳଂ କୁର୍ବାଣୋ ନ ବିନଶ୍ୟତି । ୫୯ ।

କୁଳୀନ ଲୋକ ସଙ୍ଗତ ବନ୍ଧୁତ୍ୱ କଲେ, ପଣ୍ଡିତମାନଙ୍କ ସଙ୍ଗ ମିତ୍ରତା କରିଲେ । ଆପଣାର ଜାତି ଗୋତ୍ର ମେଳ ମଧ୍ୟେ ଥିଲେ, ବିପଦେ ନ ପଡ଼େ ସେହୁ ଜାଣିଥିବ ଭଲେ । ୫୯ ।

କଷ୍ଟା ବୃତ୍ତିଃ ପରାଧୀନା କଷ୍ଟୋ ବାସୋ ନିରାଶ୍ରୟଃ ।
ନିର୍ଦ୍ଧନୋବ୍ୟବସାୟଶ୍ଚ ସର୍ବକଷ୍ଟା ଦରିଦ୍ରତା । ୭୦ ।

ପରାଧୀନ ବୃତ୍ତି ମାନେ ଅଟେ କଷ୍ଟକର, ବହୁ କଷ୍ଟେ ନିରାଶ୍ରୟେ ବାସ କରିବାର । ଅଳ୍ପଧନେ ବ୍ୟବସାୟ କରି ବହୁ କଷ୍ଟ । ଦରିଦ୍ର ଜୀବନ ସବୁ କଷ୍ଟରୁ ଗରିଷ୍ଠ । ୭୦ ।

ତସ୍କରସ୍ୟ କୁତୋ ଧର୍ମୋ ଦୁର୍ଜ୍ଜନସ୍ୟ କୁତଃ କ୍ଷମା ।
ବେଶ୍ୟାନାଞ୍ଚ କୁତଃ ସ୍ନେହ କୁତଃ ସତ୍ୟଞ୍ଚ କାମିନାଂ । ୭୧ ।

ଚୋରଠାରେ ଦୟା ଧର୍ମ ଥିବ ଅବା କାହିଁ, ଦୁଷ୍ଟ ଲୋକଠାରେ କ୍ଷମାଗୁଣ ନ ମିଳଇ । ପ୍ରକୃତ ସ୍ନେହ ବେଶ୍ୟାର ପାଶେ ନ ମିଳଇ । କାମାତୁର ଲୋକ କେବେ ସତ୍ୟ ନ ଭାଷଇ । ୧ ।

ପ୍ରୋଷିତ୍ୟସ୍ୟ କୁତୋ ମାନଃ କୋପନସ୍ୟ କୁତଃ ସୁଖଂ ।
ସ୍ତ୍ରୀଣାଂ କୁତଃ ସତୀତ୍ୱଞ୍ଚ କୁତ ପ୍ରୀତିଃ ଖଳସ୍ୟ ଚ । ୭୨ ।

ଯାଚକରକୁ ମାନ୍ୟ ଅବା କିଏ କରିପାରେ । କ୍ରୋଧୀ ଲୋକେ ସୁଖ ନ ମିଳଇ କେଉଁଠାରେ । ନାରୀ ସତୀତ୍ୱ ରଖିବ ଏ ବଡ଼ ଦୁର୍ଲ୍ଲଭ । ଖଳ ସନ୍ନିଧରେ ପ୍ରୀତି ନୁହଇ ସୁଲଭ । ୭୨ ।

ଦୁର୍ବଳସ୍ୟ ବଳଂ ରାଜା ବାଳାନାଂ ରୋଦନଂ ବଳଂ ।
ବଳଂ ମୂର୍ଖସ୍ୟ ମୌନତ୍ୱଂ ଚୌରାଣାମନୃତଂ ବଳଂ । ୭୩ ।

ଦୁର୍ବଳ ଲୋକର ରାଜା ବଳ ଯେ ଅଟଇ । ବାଳକମାନଙ୍କ ବଳ ରୋଦନ ଅଟଇ । ମଉନ ହୋଇ ରହିବା ବଳ ମୂର୍ଖଙ୍କର । ମିଛ କହିବା ଯେ ବଳ ଅଟେ ଚୋରଙ୍କର । ୭୩ ।

ଯୋ ଧ୍ରୁବାଣୀ ପରିତ୍ୟଜ୍ୟ ଅଧ୍ରୁବଂ ପରିସେବତେ ।
ଧ୍ରୁବାଣୀ ତସ୍ୟ ନଶ୍ୟନ୍ତି ଅଧ୍ରୁବଂ ନଷ୍ଟମେବ ହି । ୭୪ ।

ଯେହୁ ନିଶ୍ଚିତ ବିଷୟ ପରିତ୍ୟାଗ କରି, ଅନିଶ୍ଚିତ ବିଷୟକୁ ହୃଦେ ଥାଏ ଧରି । ନିଶ୍ଚିତ ଅନିଶ୍ଚିତ ଏ ଦୁଇ ନାଶହୋଇ, ବାଞ୍ଛିତ କାର୍ଯ୍ୟ ନ କଲେ ପ୍ରମାଦେ ପଡ଼ଇ । ୫୪ ।

ଶୁଷ୍କ ମାଂସ ସ୍ତ୍ରୀୟୋ ବୃଦ୍ଧା ବାଳାର୍କାଂ ସ୍ତରଜଂ ଦଧି ।
ପ୍ରଭାତେ ମୈଥୁନଂ ନିଦ୍ରାଂ ସଦ୍ୟଃ ପ୍ରାଣଃ ହରଣିଷଟ୍ । ୭୫ ।

ଶୁଖିଲ ମାଂସ ଖାଇବା ବୃଦ୍ଧା ସ୍ତ୍ରୀ ରମଣ, ସକାଳ ଖରାରେ ବୁଲ ଘୋଳ ଦହି ପାନ । ସକାଳେ ଶୋଇବା ପୁଣି ସକାଳେ ମୈଥୁନ, ଏ ଛଅ କଥାରେ ମୃତ୍ୟୁ ନିଶ୍ଚେ ହୁଏ ଜାଣ । ୭୫ ।

ସଦ୍ୟମାଂସ ନବାନ୍ନଞ୍ଚ ବାଳ ସ୍ତ୍ରୀ କ୍ଷୀରଭୋଜନଂ ।
ଘୃତମୁଷ୍ଣୋଦକଂ ଚୈବ ସଦ୍ୟଃ ପ୍ରଣକରଣିଷଟ୍ । ୭୬ ।

ସଜ ମାଂସ ତପ୍ତ ଅନ୍ନ କରିଲେ ଭୋଜନ, ଯୁବତୀ ନାରୀ ରମଣ ସଦ୍ୟ ଦୁଗ୍ଧ ପାନ । ସଦ ଘୃତ ଉଷ୍ଣ ଜଳ ଯେହୁ ପାନକରେ ଏହି ଛଅ ଆୟୁଷକୁ ବଢ଼ାନ୍ତି ସତ୍ଵରେ । ୭୬ ।

ସିଂହାଦେକଂ ବକାଦେକଂ ଷଟ୍ ଶ୍ୱାନସ୍ତ୍ରୀଣି ଗର୍ଦ୍ଦଭାତ ।
ବାୟସାତ୍ ପଞ୍ଚଶିକ୍ଷେତ ଚତ୍ୱାରି କୁକ୍କୁଟାଦପି । ୭୭ ।

ସିଂହଠାରୁ ଏକ ପୁଣି ବକଠାରୁ ଏକ, ଶ୍ୱାନଠାରୁ ଛଅ ବିଦ୍ୟା ଆନନ୍ଦରେ ଶିଖ । ଗଧଠାରୁ ତିନି କାକଠାରୁ ପାଞ୍ଚଗୁଣ, କୁକୁଡ଼ଠାରୁ ଚାରୋଟି ଶିଖିବ ସୁଜନ । ୭୭ ।

ପ୍ରଭୂତମଳ୍ପକାର୍ଯ୍ୟମ୍ବା ଯୋ ନରଃ କର୍ତ୍ତୁମିଚ୍ଛତି ।
ସମ୍ଭାରମ୍ଭେଣ ତତ୍କାର୍ଯ୍ୟାନ୍ତସିଂହାଦକଂ ପ୍ରକୀର୍ତ୍ତିତଂ । ୭୮ ।

ଶ୍ରେଷ୍ଠ କାର୍ଯ୍ୟ ଥାଇ ଅବା ବଡ଼ କାର୍ଯ୍ୟ ଥାଇ, ଯତନେ ତାହା କରିବ ଅଳସ ନ ହୋଇ । ସିଂହଠାରେ ଏହି ଗୁଣ ବିଦ୍ୟମାନ ଥାଏ, ତାଠାରୁ ଏ ଗୁଣ ଶିକ୍ଷାକରିବ ନିଶ୍ଚୟ । ୭୮ ।

ସର୍ବେନ୍ଦ୍ରିୟାଣି ସଂଯମ୍ୟ ବକବତ୍ ପଣ୍ଡିତୋ ଜନ ।
ଦେଶକାଳୋପପନ୍ନାନି ସର୍ବକାର୍ଯ୍ୟାଣି ସାଧୟେତ୍ । ୭୯ ।

ଇନ୍ଦ୍ରିୟମାନଙ୍କୁ ରଖି ନିଜ ଆୟତ୍ତରେ, ବକ ପରି ବସିଥିବ ଏକଇ ଧ୍ୟାନରେ । ଦେଶ କାଳ ଭାବ କର୍ମ କରିବ ସାଧନ, ଯେଉଁପରି ବକ ଚାହିଁ ବସିଥାଏ ମୀନ । ୭୯ ।

ବହ୍ୱାଶୀ ସ୍ୱଳ୍ପ ସନ୍ତୁଷ୍ଟଃ ସୁନିଦ୍ରୋ ଶୀଘ୍ରଚେତନଃ ।
ପ୍ରଭୁଭକ୍ତଶ୍ଚ ଶୂରଶ୍ଚ ଜ୍ଞାତବ୍ୟାଃ ଷଟ୍‌ଶ୍ୱାନୋଗୁଣାଃ । ୭୦ ।

ବହୁତ ଖାଇ ପାରଇ ଅଳ୍ପେ ତୃଷ୍ଟ ହୁଏ, ଶୀଘ୍ରକର ଉଠେ ଯେବେ ନିଦ୍ରା ଯାଇଥାଏ । ପ୍ରଭୁଭକ୍ତ ପୁଣି ଯଥାଶକ୍ତି ବଳବାନ, ଶ୍ୱାନଠାରୁ ଛଅଗୁଣ ଶିଖିବ ସୁଜନ । ୭୦ ।

ଅବିଶ୍ରାମ ବହେଦ୍‌ଭାରଂ ଶୀତୋଷ୍ଣଂ ନ ଚ ବିନ୍ଦତି ।
ସ ସନ୍ତୋଷସ୍ତଥା ନିତ୍ୟଂ ତ୍ରିଣି ଶିକ୍ଷେତ ଗର୍ଦ୍ଦଭାତ୍ । ୭୧ ।

ଶୀତ ଗ୍ରୀଷ୍ମ ଆଦି କଷ୍ଟ ସମାନ ମଣଇ, କ୍ଳାନ୍ତ ନୋହି ଅନୁକ୍ଷଣ ଭାର ବୋହୁଥାଇ । ସର୍ବଦା ସନ୍ତୁଷ୍ଟ ଥାଏ ଏହି ତିନ ଗୁଣ । ଗଧଠାରୁ ଶିକ୍ଷା କର ଆହେ ବୁଦ୍ଧିମାନ । ୭୧ ।

ଗୂଢ଼ଂ ଧର୍ମଞ୍ଚମୈଥୁନଂ କାଳେ ଚ ସଂଗ୍ରହ ।
ଅପ୍ରମାଦମନାଶ୍ରସ୍ୟଂ ଚତ୍ୱାରଃ ଶିକ୍ଷେତ ବାୟସାତ । ୭୨ ।

ମୈଥୁନ କର୍ମ କରିବ ଅତି ଗୋପନରେ, ସର୍ବଦା ଚେଷ୍ଟା କରିବ ଖାଦ୍ୟ ସଂଗ୍ରହରେ । ସାବଧାନ ସର୍ବଦା ଅଳସୁଆ ନୋହିବ ଏ ଚାରୋଟି ଗୁଣ କାକଠାରୁ ଯେ ଶିଖିବ । ୭୨ ।

ଯୁଦ୍ଧଞ୍ଚ ପ୍ରାତରୁଥାନ ଭୋଜନଃ ସହବନ୍ଧୁଭିଃ ।
ସ୍ତ୍ରୀୟମାପଦଗ୍ରସ୍ତାଂ ରକ୍ଷେତ୍ ଚତ୍ୱାରଃ ଶିକ୍ଷେ ଚ କୁକ୍କୁଟାତ୍ ।

ପାହାନ୍ତାରୁ ଉଠି ଯୁଦ୍ଧେ ଅଗ୍ରଗାମୀ ହେବ, ଭୋଜନ କରିବ ସେନ ବନ୍ଧୁ ଯେ ବାନ୍ଧବ । ବିପଦରୁ ନିଜ ପତ୍ନୀ ଉଦ୍ଧରିବ ପୁଣ, କୁକ୍କୁଟଠାରୁ ଶିଖିବ ଏହି ଚାରିଗୁଣ । ୭୩ ।

କୋଽତିଭାରଃ ସମର୍ଥାନାଂ ନାଦୁରଂ ବ୍ୟବସାୟିନାଂ ।
କୋ ବିଦେଶଃ ସବିଦ୍ୟାନଂ କଃ ପରଃ ପ୍ରିୟବାଦିନା । ୭୪ ।

କାର୍ଯ୍ୟକ୍ଷମ ଲୋକ କେବେ ଭାର ନ ମଣନ୍ତି, ବ୍ୟବସାୟୀ ପକ୍ଷେ ବାଟ ଦୂର ଯେ ନୁହଇ । ଦେଶ ବିଦେଶ ନ ଭାବେ ଯେତ୍ତୁ ଜ୍ଞାନଜନ, ମିଷ୍ଟଭାଷୀ ଲୋକେ ଶତ୍ରୁ କେହି ନାହିଁ ଜଣ । ୭୪ ।

ଅପଦାଂ କଥିତଂ ପନ୍ଥା ଇନ୍ଦ୍ରିୟାଣା ମସଂଯମଃ ।
ତଜ୍ଜୟଃ ସମ୍ପଦାଂ ମାର୍ଗୋ ଯେନେଷ୍ଟଂ ତେନଗମ୍ୟତା । ୭୫ ।

ଇନ୍ଦ୍ରିୟମାନଙ୍କୁ ନ ପାରିଲେ ବଶକରି, ଆପଦ ବିପଦ ମାନ ଜନ୍ମେ ଆସେ ଘେରି । ଇନ୍ଦ୍ରିୟ ଦମନ କଲେ ଆଉ କି ଭାବନା, ଯେଣେ ଇଚ୍ଛା ତେଣେ ଯାଅ ନ ଥାଇ ଶୋଚନା । ୭୫ ।

ନ ଚ ବିଦ୍ୟା ସମୋବନ୍ଧୁ ନ ଚ ବ୍ୟାଧି ସମୋରିପୁଃ ।
ସ ଚାପତ୍ୟସମଃ ସ୍ନେହୋ ନ ଦୈବାତ୍ ପରଂ ବଳା । ୭୬ ।

ବିଦ୍ୟା ପରି ବନ୍ଧୁ ଆଉ ସଂସାରେ ନ ମିଳେ, ବ୍ୟାଧିଠାରୁ ବଳ ଶତ୍ରୁ ନାହିଁ ଭୂମଣ୍ଡଳେ । ପୁତ୍ର ସ୍ନେହଠାରୁ ବଳି ଆଉ ସ୍ନେହ ନାହିଁ, ଦଇବ ବଳରୁ କାହା ବଳ ବେଶୀ ନୋହି । ୭୬ ।

ସମୁଦ୍ରାବରଣ ଭୂମିଃ ପ୍ରକାରାବରଣଂ ଗୃହଂ ।
ନରେନ୍ଦ୍ରା ବରଣ ଦେଶାଶ୍ଚରିତାବରଣଃ ସ୍ତ୍ରୀୟଃ । ୭୭ ।

ସମୁଦ୍ର ଆବରଣରେ ପୃଥ୍ୱୀ ମନୋହର, ପାଚେରି ଦ୍ୱାରା ଆବୃତ ଘର ଯେ ସୁନ୍ଦର । ରଜା ଆବରଣ ଦେଶ ଅଟେ ସୁଖକର, ସଚ୍ଚରିତ୍ର ଆବରଣ ନାରୀର ସୁନ୍ଦର । ୭୭ ।

ନାସ୍ତିବିଦ୍ୟା ସମଂ ବନ୍ଧୁ ନାସ୍ତି ସତ୍ୟ ସମ ତପଃ ।
ନାସ୍ତି ରୋଗସମଂ ଦୁଃଖଂ ନାସ୍ତି ତ୍ୟାଗ ସମଂ ସୁଖଂ । ୭୮ ।

ବିଦ୍ୟାର ସମାନ ବନ୍ଧୁ ନାହିଁ କେଉଁଠାରେ, ସତ୍ୟର ସମାନ ତପ ନାହିଁ ଏ ସଂସାରେ । ରୋଗର ସମାନ ଶତ୍ରୁ ନ ମିଳଇ କାହିଁ, ଲୋଭକୁ ଛାଡ଼ିଲେ ନର ସୁଖରେ ରହଇ । ୭୮ ।

ଘୃତକୁମ୍ଭ ସମାନାରୀ ତପ୍ତାଙ୍ଗାର ସମଃ ପୁମାନ୍ ।
ତସ୍ମାଦ୍ ଘୃତଞ୍ଚ ବହ୍ନିଞ୍ଚ ନୈକତ୍ର ସ୍ଥାପୟେଦ୍ ବୁଧଂ । ୭୯ ।

କହିଲି ଘିଅ ମାଠିଆ ପରି ନାରୀ ଜାତି, ପୁରୁଷେ ଜଳନ୍ତ ନିଆଁ ତହିଁକି ଅଟନ୍ତି । ଘିଅ ନିଆଁ ଏକତ୍ରରେ ତରଳଣ ଯାଏ, ତେଣୁ ସ୍ତ୍ରୀ ପୁରୁଷ ଏକତ୍ରରେ ରଖି ନୁହେଁ । ୭୯ ।

ଆହାରେ ଦ୍ୱିଗୁଣାଃ ସ୍ତ୍ରୀଣାଂ ବୁଦ୍ଧିସ୍ତାସାଂ ଚତୁର୍ଗୁଣା ।
ଷଡ଼୍‌ଗୁଣୋ ବ୍ୟବସାୟଶ୍ଚ କାମାଶ୍ଚାଷ୍ଟ ଗୁଣାଃ ସ୍ମୃତଂ । ୮୦ ।

ପୁରୁଷଠାରୁ ଦ୍ୱିଗୁଣ ଭୋଜନ ନାରୀଙ୍କର, ବୁଦ୍ଧିବଳ ଚତୁର୍ଗୁଣ ଅଧିକ ଆଦର । ବ୍ୟବସାୟ କରିବାରେ ବୁଦ୍ଧି ଛଅଗୁଣ, କାମଶକ୍ତି ଅଧିକ ଅଟଇ ଆଠଗୁଣ । ୮୦ ।

ଜୀର୍ଣ୍ଣମନ୍ନଂ ପ୍ରଶଂସୀୟଦ୍ ଭାର୍ଯ୍ୟାଞ୍ଚ ଗତଯୌବନା ।
ରଣାତ୍ ପ୍ରତ୍ୟାଗତଂ ଶୂରଂ ଶସ୍ୟଞ୍ଚ ଗୃହମାଗତ । ୮୧ ।

ଜୀର୍ଣ୍ଣ ଯେ ସହଜେ ହୁଏ ଭଲ ଅନ୍ନ ସେହି, ନଦୋଷେ ଯୌବନ ଗଲେ ସୁଭାର୍ଯ୍ୟା ବୋଲଇ । ଯୁଦ୍ଧରେ ଜିଣି ଆସିଲେ ବୀର ଧନ୍ୟହୁଏ, କିଆରିରୁ ଆସିଲେ ସେ ଶସ୍ୟ ଭଲ କହେ । ୮୧ ।

ଅସନ୍ତୁଷ୍ଟା ଦ୍ୱିଜା ନଷ୍ଟା ସନ୍ତୁଷ୍ଟାଇବ ପାର୍ଥିବ ।
ସଲ୍ଲଜା ଗଣିକା ନଷ୍ଟା ନିର୍ଲଜ୍ଜାଶ୍ଚ କୁଳସ୍ତ୍ରୀୟଃ । ୮୨ ।

ଅସନ୍ତୁଷ୍ଟ ହେଲେ ନଷ୍ଟ ହୁଅନ୍ତି ବ୍ରାହ୍ମଣ, ସନ୍ତୋଷ ରଜାର ଭଲ ନୁହେଁ ରାଜପଣ । ଲଜ୍ଜା କଲେ ବେଶ୍ୟାମାନେ ସହଜେ ମରନ୍ତି, କୁଳସ୍ତ୍ରୀଗ ଲଜ୍ଜାକୁ ଛାଡ଼ିଲେ ନାଶଯାନ୍ତି । ୮୨ ।

ଅକୁଳୀନା ପତିତୋ ରାଜା ମୂର୍ଖଶ୍ଚ ପୁତ୍ର ପଣ୍ଡିତଃ ।
ନିର୍ଦ୍ଧନଶ୍ଚ ଧନଂ ପ୍ରାପ୍ୟ ତୃଣବତ୍ ମାନ୍ୟତେ ଜଗତ୍ । ୮୩ ।

ନୀଚକୁଳେ ଜନ୍ମି ଯେବେ ରାଜପଣ ପାଇ, ମୂର୍ଖ ଲୋକ ପୁତ୍ର ଯେବେ ପଣ୍ଡିତ ହୁଅଇ । ଦରିଦ୍ର ଯଦ୍ୟପି କିଛି ଧନ ଥାଏ ପାଇ, ସଂସାରକୁ ତୃଣପରି ମଣନ୍ତି ସେ ଏହି । ୮୩ ।

ବ୍ରହ୍ମଘ୍ନୋଽପି ନର ପୂଜ୍ୟୋ ଯସ୍ୟାସ୍ତି ବିପୁଳଂ ଧନ ।
ଶଶିନସ୍ତୁଲ୍ୟବଂଶୋଽପି ନିର୍ଦ୍ଧନଃ ପରିଭୂୟତେ । ୮୪ ।

ଧନବାନ ଲୋକ ଯେବେ ବ୍ରହ୍ମହତ୍ୟା କରେ, ତଥାପି ତାହାକୁ ମାନ୍ୟ କରନ୍ତି ସଂସାରେ । ଚନ୍ଦ୍ରପରି ଉଜ୍ଜ୍ୱଳ ବଂଶରେ ଜାତହୋଇ, ଧନହୀନ ହେଲେ ତାକୁ ନ ମାନନ୍ତି କେହି । ୮୪ ।

ପୁସ୍ତକସ୍ଥା ତୁ ଯା ବିଦ୍ୟା ପରହସ୍ତ ଗତଂ ଧନଂ
କାର୍ଯ୍ୟକାଳେ ସମୁତ୍ପନ୍ନେ ନ ସ ବିଦ୍ୟା ନ ତଦ୍ଧନଂ । ୮୫ ।

ପୁସ୍ତକେ ଥିଲେହେଁ ବିଦ୍ୟା ମୁଖେ ଆସେ ନାହିଁ, ନିଜ ହାତ ଧନ ଯେବେ ପରହାତେ ଥାଇ । କାର୍ଯ୍ୟ ସମୟରେ ତାହାକୁହେଁ ପ୍ରୟୋଜନ, ଥିବା ନଥିବା ଉଭୟ ଅଟଇ ସମାନ । ୮୫ ।

ପାଦପାନାଂ ଭୟଂ ବାତାତ ପଦ୍ମାନାଂ ଶିଶିରାତ୍ ଭୟଂ ।
ପର୍ବତାନାଂ ଭୟଂ ବଜ୍ରାତ୍ ସାଧୂନାଂ ଦୁର୍ଜ୍ଜନାଭୟ । ୮୬ ।

ତୋଫାନ ଅଟଇ ଭୟ ବୃକ୍ଷମାନଙ୍କର, ଶିଶିର ପଡ଼ିଲେ ଭୟ ହୁଅଇ ପଦ୍ମର । ବଜ୍ରପାତ ହେଲେ ପର୍ବତର ଭୟ ହୁଏ, ସାଧୂଙ୍କର ଭୟ ଦୁର୍ଜ୍ଜନକୁ ସବୁଠାଏଁ । ୮୬ ।

ପ୍ରାଜ୍ଞେ ନିୟୋଜ୍ୟମାନେ ତୁ ସନ୍ତି ରାଜ ସ୍ତ୍ରୀୟୋ ଗୁଣଃ ।
ଯଶଃ ସ୍ୱର୍ଗ ନିବାସଶ୍ଚ ବିପୁଳଚ ଧନାଗମଃ । ୮୭ ।

ରାଜ୍ୟଭାର ଦିଆଗଲେ ପଣ୍ଡିତଙ୍କ ଠାରେ, ଏହି ତିନଗୁଣ ଲଭ ହୁଏ ସହଜରେ । ପ୍ରଥମରେ ଯଶ ଦ୍ୱିତୀୟରେ ସ୍ୱର୍ଗ ସୁଖ, ତୃତୀୟେ ବହୁ ସମ୍ପତ୍ତି ଜାଣ ସୁବିବେକ । ୮୭ ।

ମୂର୍ଖେ ନିୟୋଜଃମାନେ ତୁ ତ୍ରୟୋଦଶ ମହୀପତେଃ ।
ଅଯଶଶ୍ଚାର୍ଥନାଶଶ୍ଚ ନର୍କେ ଗମନଂ ତଥା । ୮୮ ।

ରାଜ୍ୟଭାର ଦିଆଗଲେ ମୂର୍ଖ ଲୋକଠାରେ, ଏହି ତିନଦୋଷ ଜାତ ହୁଏ ଅକ୍ଳେଶରେ । ପ୍ରଥମରେ ନିନ୍ଦା ଦ୍ୱିତୀୟରେ ଧର୍ମନାଶ, ତୃତୀୟେ ସମ୍ପତ୍ତି କ୍ଷୟ ନରକରେ ବାସ । ୮୮ ।

ବହୁଭିର୍ମୂର୍ଖ ସଙ୍ଘାତୈ ରନ୍ୟୋଽନ୍ୟପଶୁ ବୃତ୍ତିଭିଃ ।
ପ୍ରଚ୍ଛାଦ୍ୟନ୍ତେ ଗୁଣା ସର୍ବେ ମେଘୈରିବ ଦିବାକରଃ । ୮୯ ।

ପଶୁପରି ବ୍ୟବହାର ମୂର୍ଖମାନଙ୍କର, ବହୁମୂର୍ଖମେଳେ ଯେବେ ଥାଏ ସାଧୁ ନର । ଯେପରି ମେଘ ସମୂହେ ସୂର୍ଯ୍ୟ ଲୋପ ପାଇ, ସେପରି ସାଧୁଙ୍କ ଭଲ ଗୁଣ ଲୁଚ ଯାଇ । ୮୯ ।

ଯସ୍ୟଂ କ୍ଷେତ୍ରଂ ନଦୀତୀରେ ଭାର୍ଯ୍ୟାପି ପରପ୍ରିୟା ।
ପୁତ୍ରେ ଚ ବିନୟୋ ନାସ୍ତି ମୃତ୍ୟୁରେବ ନ ସଂଶୟଃ । ୯୦ ।

ନଈକୂଳେ କ୍ଷେତ ଯାର ଭରସା କି ତାର । ଭାର୍ଯ୍ୟା ଯେବେ ପର ରତା କି ସୁଖ ତାହାର । ଅମାନିଆ ହେଲେ ପୁତ୍ର ସୁଖକି ତହିଁରେ, ସଂଶୟ ନାହିଁ ଏପରି ଦୁଃଖୀର ମୃତ୍ୟୁରେ । ୯୦ ।

ଅସମ୍ଭବଂ ନ ବକ୍ତବ୍ୟଂ ପ୍ରତ୍ୟକ୍ଷଂ ଯଦି ଦୃଶ୍ୟତେ ।
ଶିଳା ତରନ୍ତି ପାନୀୟଂ ଗୀତ ଗାୟନ୍ତି ବାନର । ୯୧ ।

ଅସମ୍ଭବ କଥା ନଜେ ଦେଖିଥିବ ଯେବେ, କଦାପି ପର ଆଗେ ତା ନ କହିବ କେବେ । ପଥର ପାଣିରେ ଭାସେ ହନୁ ଗୀତ ଗାଏ, ଏ କଥା କହିଲେ ବିଶ୍ୱାସ ବା କିଏ କଏ । ୯୧ ।

ସୁଭିକ୍ଷଂ କୃଷକେ ନିତ୍ୟଂ ନିତ୍ୟଂ ସୁଖମରୋଗିଣଃ ।
ଭାର୍ଯ୍ୟା ଭର୍ତ୍ତୁଃପ୍ରିୟା ଯସ୍ୟ ତସ୍ୟ ନିତ୍ୟୋତ୍ସବଗୃହଂ । ୯୨ ।

ଗୃହେ ଶସ୍ୟ ଥିଲେ ଚଷା ଥାଏ ଆନନ୍ଦରେ, ନିରୋଗୀ ଲୋକର ସୁଖ ସର୍ବଦା ସଂସାରେ । ସ୍ୱାମୀ ସେବା କାରିଣୀ ସୁନ୍ଦରୀ ଭାର୍ଯ୍ୟାଥିଲେ, ପ୍ରତ୍ୟହ ଆନନ୍ଦେ ଦିନ କାଟେ ସେହୁ ଭଲେ ।୯୨।

ହେଳାସ୍ୟାତ୍ କାର୍ଯ୍ୟନାଶାୟ ବୁଦ୍ଧିନାଶାୟ ନିର୍ଦ୍ଧନଂ ।
ଯାଚଞା ମାନନାଶାୟ କୁଳନାଶାୟ କୁଭୋଜନଂ । ୯୩ ।

ହେଳା କଲେ କାର୍ଯ୍ୟ ନାଶ ଏ ଦୃଢ଼ ବଚନ, ଧନହୀନ ହେଲେ ବୁଦ୍ଧି ନାଶ ଯାଏ ପୁଣ । ମାଗିଲା ଲୋକର ମାନ ନ ରହେ ସଂସାରେ, କୁଖାଦ୍ୟ ଖାଇଲେ ବଂଶ ନାଶ ଯାଏ ଖରେ । ୯୩ ।

ସେବିତବ୍ୟୋ ମହାବୃକ୍ଷଃ ଫଳଚ୍ଛାୟା ସମନ୍ୱିତଃ ।
ଯଦି ଦୈବାତ୍ ଫଳଂନାସ୍ତି ଛାୟାକେନ ନିବାର୍ଯ୍ୟତେ । ୯୪ ।

ଫଳ ପତ୍ର ପୂର୍ଣ୍ଣ ବଡ଼ ଗଛ ଆଶ୍ରା ନେଲେ, ଯଦିବା ଫଳ ନ ମିଳେ ଦଇବର ବଳେ । ତେବେ ସୁଦ୍ଧା ଛାଇ ତହିଁ ପାଇବ ନିଶ୍ଚୟ, ଜୀବନ ଶାନ୍ତ ଲଭିବ ନାହିଁଟି ସନ୍ଦେହ । ୯୪ ।

ପ୍ରଥମେ ନାର୍ଜିତଂ ବିଦ୍ୟା ଦ୍ୱିତୀୟେ ନାର୍ଜିତଂ ଧନ ।
ତୃତୀୟେ ନାର୍ଜିତଂ ପୁଣ୍ୟଂ ଚତୁର୍ଥେ କି କରିଷ୍ୟତି । ୯୫ ।

ପ୍ରଥମ ଅବସ୍ଥାବେଳେ ବିଦ୍ୟା ନ ଶିଖିଲେ, ଦ୍ୱିତୀୟ ଅବସ୍ଥା ବେଳେ ଧନ ନ ଅର୍ଜିଲେ । ତୃତୀୟ ଅବସ୍ଥାରେ ନ ଅରଜିଲେ ଧର୍ମ, ଚତୁର୍ଥେ କିଛି କରି ନ ପାରେ ସେ ଅଧମ । ୯୫ ।

ନଦୀକୂଳେ ଚଯା ଗୃହା ପରହସ୍ତ ଗତଂ ଧନଂ ।
କାର୍ଯ୍ୟସ୍ତ୍ରୀଗୋଚରଂ ଯସ୍ୟ ସର୍ବଂତଦ୍ ବିଫଳଭବେତ୍ ।୯୬।

ନଈ କୂଳେ ଘର ଥିଲେ ପରତେ ନ ଥାଏ, ପରହାତ ଧନ କେବେ କାର୍ଯ୍ୟ ନ ଯୋଗାଏ । ଆଗତ କାର୍ଯ୍ୟକୁ ଯେବେ ସ୍ତ୍ରୀଏ ଜାଣନ୍ତି, ପ୍ରକାଶ କରିଣ ତାହା ବିଫଳ କରନ୍ତି । ୯୬ ।

କୁଦେଶମାସାଦ୍ୟ କୁତୋଽଥ ସଞ୍ଚୟଃ କୁପୁତ୍ରମାସିଦ୍ୟ ।
କୁତୋଜଳାଞ୍ଜଳିଃ କୁଗୃହିଣୀଂ ପାପ ଗୃହେ କୁତଃ
ସୁଖଂ, କୁଶିଷ୍ୟ ଅଧ୍ୟାପୟତଃ କୁତୋ ଯଶଃ । ୯୭ ।

ହୀନଦେଶେ ଗଲେ ଧନ ଅର୍ଜନ ନ ହୁଏ, କୁଳାଙ୍ଗାର ପୁତ୍ର ପିତୃ ଶ୍ରାଦ୍ଧକୁ ନ ଦିଏ । ଅଲକ୍ଷଣୀ ସ୍ତ୍ରୀଯଠାରେ ସୁଖ ଲେଶ ନାହିଁ, ମନ୍ଦ ଶିଷ୍ୟେ ଶିକ୍ଷାଦେଲେ ଯଶ ନ ମିଳଇ । ୯୭ ।

କୂପୋଦକଂ ବଟଚ୍ଛାୟା ଶ୍ୟାମା ସ୍ତ୍ରୀ ଚେଷ୍ଟାକାଳୟଂ ।
ଶୀତକାଳେ ଭବେଦୁଷ୍ଣଂ ଗ୍ରୀଷ୍ମକାଳେ ଚ ଶୀତଳ । ୯୮ ।

କୂଅପାଣି ବରଗଛ ଛାଇ ଯେ ଆବର, ଶ୍ୟାମବର୍ଣ୍ଣା ସ୍ତ୍ରୀୟ ସଙ୍ଗ ପୁଣି ଇଟା ଘର । ଏମାନେ ଶୀତକାଳରେ ଉଷୁମ ଲାଗନ୍ତି, ପୁଣି ଖରା ସମୟେ ଶୀତଳ ଜଣାଯାନ୍ତି । ୯୮ ।

ସର୍ବହିଂସାନିବୃତ୍ତାଯେ ନରାଃସର୍ବଂ ସହାଶ୍ଚ ଯେ ।
ସର୍ବସ୍ୟାଶ୍ରୟଭୂତାଶ୍ଚ ଯେ ନରାଂ ସ୍ୱର୍ଗଗାମିନଃ । ୯୯ ।

ଯାହାଙ୍କ ହୃଦୟେ ହିଂସା କରିନାହିଁ ଘର, ଯେତେ ଦୁଃଖ ହେଲେ ସେହି ସହେ ନରଜଇ । ସର୍ବ ଜୀବେ ଦେଉଥାନ୍ତି ଯେ ଆଶ୍ରୟ ଦାନ, ଅବଶ୍ୟ ସେ ଲୋକ ଦେବସ୍ଥାନେ ପାଏ ସ୍ଥାନ ।୯୯।

ପ୍ରିୟବାକ୍ୟ ପ୍ରଦାନେନ ସର୍ବେ ତୁଷ୍ୟନ୍ତି ଜନ୍ତବଃ ।
ତସ୍ମାତ୍ ତଦେବ ବକ୍ତବ୍ୟଂ ବଚନେ କା ଦରିଦ୍ରତା ।୧୦୦।

କହିବ ସରଳ ମନେ ସୁମିଷ୍ଟ ବଚନ, ସାଧୁର କଥାରେ ତୋଷ ହୁଅନ୍ତି ସର୍ବଜନ । ମିଷ୍ଟକଥା କହିବାକୁ କଷ୍ଟ ହୁଏନାହିଁ, ତେବେ କମ୍ପା ମିଷ୍ଟକଥା କହି ନ ଯୋଗାଇ । ୧୦୦ ।

ବିଷଂ ସଙ୍କ୍ରମଣଂ ରାତ୍ରୌ ବିଷଂ ରାଜ୍ଞୋଽନୁକୂଳତା ।
ବିଷଂ ସ୍ତ୍ରିୟୋଽପ୍ୟନ୍ୟରତାଂ ବିଷଂ ବ୍ୟାଧିରବୀକ୍ଷିତ ।୧୦୧।

ରାତିରେ ବୁଲିବା ବିଷପରି ଦେହ ଘାରେ, ରାଜା ଅନୁଗ୍ରହ ବିଷପରି ଜାଣ ନରେ । ଭାର୍ଯ୍ୟା ପରେ ରମିଲେ ସ୍ୱାମୀର ବିଷ ପ୍ରାପ୍ତେ, ଚିକିତ୍ସା ନ କଲେ ରୋଗ ବିଷପରି ହୁଏ । ୧୦୧ ।

ଅନଭ୍ୟାସେ ବିଷଂ ବିଦ୍ୟା ଅଜୀର୍ଣ୍ଣେ ଭୋଜନଂ ବିଷଂ ।
ବିଷଂ ଗୋଷ୍ଠୀ ଦରିଦ୍ରସ୍ୟ ବୃଦ୍ଧସ୍ୟ ତରୁଣୀ ବିଷଂ । ୧୦୨ ।

ଅଭ୍ୟାସ ନ କଲେ ବିଦ୍ୟା ହୁଏ ବିଷପରି, ଅଜୀର୍ଣ୍ଣ ଭୋଜନ ବିଷ ସଙ୍ଗେ ଅଟେ ସରି । ଦରିଦ୍ରର ବିଷ ଅଟେ କୁଟୁମ୍ବ ବହୁତ, ବୁଢ଼ାଙ୍କର ଯୁବାନାରୀ ଅଟେ ବିଷବତ । ୧୦୨ ।

ପ୍ରଦୋଷେ ନିହତଃ ପନ୍ଥା ପତିତାଃ ନିହତଃ ସ୍ତ୍ରିୟଃ ।
ଅଳ୍ପ ବୀଜଂ ହତଂ କ୍ଷେତ୍ରଃ ଭୃତ୍ୟଦୋଷେ ହତାଂ ପ୍ରଭୁ ।୧୦୩।

ସନ୍ଧ୍ୟାପରେ ବାଟ ଘାଟ କେହି ନ ଦିଶଇ, ଧର୍ମହୀନ କୁଳସ୍ତ୍ରୀଏ ଜୀବନ୍ତେ ମରଇ । ଅଳ୍ପବୀଜ ବୁଣିଲେ ଯେ କ୍ଷେତ୍ର ନଷ୍ଟ ହୁଏ, ଭୃତ୍ୟ ଦୋଷେ ପ୍ରଭୁ ନାଶ ହୁଅଇ ନିଶ୍ଚୟେ । ୧୦୩ ।

ହତମଶ୍ରୋତ୍ରିୟଃ ଶ୍ରାଦ୍ଧଂ ହତସ୍ତୁ ଯଜ୍ଞୋସ୍ତ୍ୱଦକ୍ଷିଣାଃ ।
ହତା ରୂପବତୀ ବନ୍ଧ୍ୟା ହତଂ ସୈନ୍ୟମନାୟକଂ । ୧୦୪ ।

କର୍ମଜ୍ଞ ବ୍ରାହ୍ମଣ ବିନା ଶ୍ରାଦ୍ଧ ନଷ୍ଟ ହୁଏ, ଦକ୍ଷିଣା ନ ଦେଲେ ଯଜ୍ଞ ଫଳ ନାଶଯାଏ । ସୁନ୍ଦରୀ ଭାରିଜା ବୃଥା ସନ୍ତାନ ନୋହିଲେ, ନାଶହୁଏ ସୈନ୍ୟେ କେହି ନାୟକ ନ ଥିଲେ । ୧୦୪ ।

ବେଦବେଦାଙ୍ଗ ତତ୍ତ୍ୱଜ୍ଞୋ ଜପୋହୋମ ପରାୟଣଃ ।
ଆଶୀର୍ବାଦ ବଚୋୟୁକ୍ତ ଏଷ ରାଜ୍ଞଂ ପୁରୋହିତଃ । ୧୦୫ ।

ବେଦବେଦାଙ୍ଗର ମର୍ମ ବୁଝିବା ପଣ୍ଡିତ, ଅତି ନିଷ୍ଠାବାନ ଜପ ତପ ଅନୁଗତ । ଆଶୀର୍ବାଦ ବାକ୍ୟମାନ ମୁଖେ ସଦା ଯାର, ରାଜ ପୁରୋହିତ ଯୋଗ୍ୟ ସେହିଟି ବିପ୍ରର । ୧୦୫ ।

କୁଳଶୀଳ ଗୁଣୋପେତଃ ସର୍ବଧର୍ମ ପରାୟଣଃ ।
ପ୍ରବୀଣଃ ପୋଷିତେଧ୍ୟକ୍ଷୋ ଧର୍ମାଧ୍ୟକ୍ଷୋ ବିଧିୟତେ । ୧୦୬ ।

ଉତ୍ତମ କୁଳେ ଜନମ ସବୁ ଧର୍ମ ଜାଣେ । ମହା ମହା କୁଟମତି ସହଜେ ବଖାଣେ । ଏହି ସବୁ ସୁଲକ୍ଷଣେ ଯେହୁ ପୂର୍ଣ୍ଣଥାଏ, ତାହାଙ୍କୁ ବିଚାରପତି କରିବା ଯୋଗାଏ । ୧୦୬ ।

ଆୟୁର୍ବେଦ କୃତାଭ୍ୟାସଃ ସର୍ବେଷାଂ ପ୍ରିୟଦର୍ଶନଃ ।
ଆର୍ଯ୍ୟଶୀଳ ଗୁଣୋପେତଃ ଏଷ ବୈଦ୍ୟ ବିଧିୟତେ ।୧୦୭।

ଚିକିତ୍ସା ଶାସ୍ତ୍ରକୁ ଯେହୁ ଭଲ କରି ଜାଣେ, ସମସ୍ତଙ୍କୁ ଦେଖେ ସେହି ସସ୍ନେହ ଲୋଚନେ । ମହାନ୍ତ ମର୍ଯ୍ୟାଦାଗୁଣେ ପୂର୍ଣ୍ଣ ଯେ ଅଟଇ, ବୈଦ୍ୟରାଜ ବୋଲିକରି ଶାସ୍ତ୍ରେ ତାଙ୍କୁ କହି ।୧୦୭।

ସକୃଦୁକ୍ତ ଗୃହୀତାର୍ଥୋ ଲଘୁହସ୍ତୋ ଜିତାକ୍ଷରଃ ।
ସର୍ବଶାସ୍ତ୍ର ସମାଲୋକ୍ୟ ପ୍ରକୃଷ୍ଟୋ ନାମ ଲେଖକଃ । ୧୦୮ ।

ଶୁଣିବା ମାତ୍ରକେ ଭାବ ଅର୍ଥ ବୁଝିପାରେ, ପରିଷ୍କାର ଅକ୍ଷରକୁ ଲେଖଇ ବେଗରେ । ସର୍ବଦା ଶାସ୍ତ୍ର ପୁରାଣ ଅଭ୍ୟାସ ଯାହାର, ବିଶ୍ୱାସ ରଖିବ ଏମନ୍ତ ଲେଖକଠାରେ । ୧୦୮ ।

ସମସ୍ତନୀତି ଶାସ୍ତ୍ରଜ୍ଞୋ ବାହନେ ପୂଜିତାଶ୍ରମଃ ।
ଶୌର୍ଯ୍ୟବୀର୍ଯ୍ୟ ଗୁଣୋପେତଃ ସେନାଧ୍ୟକ୍ଷୋ ବିଧିୟତେ ।୧୦୯।

ସକଳ ନୀତିଶାସ୍ତ୍ରେ ଯେ ନିପୁଣ ଅଟଇ । ହାତୀଘୋଡ଼ା ରଥରେ ଯେ ଚଢ଼ିଣ ପାରଇ । ସାହସ ବଳିଷ୍ଠ ପଣେ ଅଟେ ଯେ ପ୍ରଧାନ, ସେନାପତି ପଦେ ତାଙ୍କୁ କରିବ ବରଣ । ୧୦୯ ।

ମେଧାବୀ ବାକ୍‌ପଟୁ ପ୍ରାଜ୍ଞଃ ପରଚିତ୍ତ ପରୀକ୍ଷକଃ ।
ଧୀରୋ ଯଥୋକ୍ତବାଦୀ ଚ ଏଷୋ ଦୂତ ବିଧୀୟତେ । ୧୧୦ ।

ବୁଦ୍ଧିମାନ ସୁବକତା ସୁବିଜ୍ଞ ଚତୁର, ପରଚିତ୍ତ ଜାଣି-ପାରେ ଅତି ଶାନ୍ତ ଧୀର । ପ୍ରକୃତ ବଚନ ଏହା ଦୃଢ଼କରି ଜାଣ, ଦୂତପଣେ ଏ ଲୋକଙ୍କୁ କରିବ ବରଣ । ୧୧୦ ।

ଅଜାଗନାନ୍ତାତ୍ ପ୍ରଣୟଃ କୋପାସ୍ତାନ୍ତ୍ କ୍ଷଣଭଙ୍ଗୁରାଃ ।
ପରିତ୍ୟାଗଶ୍ଚ ନିଃସଙ୍ଗା ଭବନ୍ତି ହି ମହାତ୍ମାନାଂ । ୧୧୧ ।

ଜୀବ ଥିବାଯାଏ ତୁମ୍ଭ ପୀରତି ନ ଟଳେ, କ୍ରୋଧହେଲେ ମଧ୍ୟ ଶାନ୍ତ ହୁଏ ଅଳ୍ପକାଳେ । ଦାନ ଲଭେ ସମଦୃଷ୍ଟି ବନ୍ଧନ ରହିତ, ଏ ମହାପୁରୁଷ ଚିହ୍ନ ଶାସ୍ତ୍ରରେ କହିତ । ୧୧୧ ।

ସ୍ୱେଦିତୋ ମର୍ଦ୍ଦିତୋଶ୍ଚୈବ ରଜଭିଃ ପରିବେଷ୍ଟିତଃ ।
ମୁକ୍ତୋ ଦ୍ୱାଦଶଭିର୍ବର୍ଷୈ ଶ୍ୱାନପୁଚ୍ଛ ପ୍ରକୃତିବତ୍ । ୧୧୨ ।

କୁକୁରର ଲାଙ୍ଗୁଡ଼କୁ ତେଲ ଦେଇ ଘସି । ସଳଖି ବଉଡ଼ି ଦ୍ୱାରା ବାନ୍ଧି ପକେ କସି । ବାରବର୍ଷ ପରେ ଯେବେ ତାକୁ ଫିଟାଇବ । ତେବେ ମୁଦ୍ଧା ପୂର୍ବପରି ବଙ୍କା ହୋଇ-ଯିବ । ୧୧୨ ।

ଯସ୍ୟ ନାସ୍ତି ସ୍ୱୟଂ ପ୍ରଜ୍ଞା ଶାସ୍ତ୍ରଂ ତସ୍ୟ କରୋତି କିଂ ।
ଲୋଚନାଭ୍ୟାଂ ବିହୀନସ୍ୟ ଦର୍ପଣ କିଂ କରିଷ୍ୟତି । ୧୧୩ ।

ବୋଧ ଶକ୍ତି ନାହିଁ ଯାର ଅତିହୀନ ମନ, କି ଲଭ ରଖି ଅସଂଖ୍ୟ ବେଦ ଶାସ୍ତ୍ରମାନ । କର୍ମ ଦୋଷେ ନାହିଁ ଯାର ଦୁଇଟି ନୟନ, କି ଫଳ ତାହାର ଆଗେ ଧରିଲେ ଦର୍ପଣ । ୧୧୩ ।

ସୁବପୌର ଗୁଣୋପେତଃ ଶାସ୍ତ୍ରଜ୍ଞୋ ମିଷ୍ଟପାଚକଃ ।
ଶୂରଶ୍ଚ ବଠନଶ୍ଚୈବ ସୂପକାରଃ ଉଚ୍ୟତେ । ୧୧୪ ।

ସୁଜ ଜାତି ଗୁଣ ଆଦି ଥିବ ଯାହାଠାରେ, ପାକ ଶାସ୍ତ୍ରମତେ ମିଷ୍ଟ ପାକ ରନ୍ଧାଠାରେ । ପରାକ୍ରମୀ ଆଉ ସେହି ଅଟଇ ସୁଜାଣ, ଏମନ୍ତ ଲୋକକୁ ସୂପକାର କରି ଘେନ । ୧୧୪ ।

ଜନୟନ୍ତ୍ୟର୍ଜନେ ଦୁଃଖଂ ତାପୟନ୍ତି ବିପତ୍ତିଷୁ
ମୋହୟନ୍ତି ଚ ସମ୍ପତ୍ତୌ କଥମର୍ଥାଃ ସୁଖାବହାଃ । ୧୧୫ ।

କେତେ ଦୁଃଖ ସହେ ଲୋକ ଧନ ଅର୍ଜନେ, ଧନକ୍ଷୟ ହେଲେ ତତୋଧିକ ଦୁଃଖ ମନେ । ଅଧିକ ଧନ ହୋଇଲେ ଗର୍ବ ଜନମଇ, ଏପରି ଧନରେ ସୁଖ କେବେ ନ ମିଳଇ । ୧୧୫ ।

ନାରିକେଳ ସମାକାରା ଦୃଶ୍ୟନ୍ତେଽପି ହି ସଜ୍ଜନାଃ ।
ଅନ୍ୟେ ବଦରିକା କାରା ବହିରେବ ମନୋହରାଃ । ୧୧୬ ।

ନଡ଼ିଆ ପରାଏ ସାଧୁ ବାହାରେ କଠିଣ, ଭିତରେ ଥାଏ ତାଙ୍କର ଦୟା କ୍ଷମାଗୁଣ । ଖଳଲୋକ ଅଟେ ବରକୋଳିର ସମାନ । ଉପରେ କୋମଳ ହୃଦ ଅତ୍ୟନ୍ତ ପାଷାଣ । ୧୧୬ ।

ମାତରଂ ପିତରଂ ପୁତ୍ରଂ ଭ୍ରାତରଂ ବା ସୁହୃତ୍ତମଂ ।
ଲୋଭାଭିଭୂତା ନ୍ତ୍ଘ୍ନନ୍ତି ସ୍ୱାମୀନଂ ବା ସହୋଦରଂ । ୧୧୭ ।

ଲୋଭଯୋଗୁଁ ପିତା ମାତା ସହୋଦର । ସ୍ୱାମୀକି ମାରନ୍ତି ନାଶି ଲୋଭ ଏଡ଼େ ଦୂର । ୧୧୭ ।

ଲୋଭାତ୍ କ୍ରୋଧଃ ପ୍ରଭବତି କ୍ରୋଧାଦ୍ ଦ୍ରୋହ ପ୍ରବର୍ତ୍ତତେ ।
ଦ୍ରୋହେଣ ନରକଂ ଯାତି ଶାସ୍ତ୍ରଜ୍ଞୋଽପି ବିଚକ୍ଷଣଂ । ୧୧୮ ।

ଲୋଭରୁ ଜନମେ ରାଗ ରାଗରୁ ଶତ୍ରୁତା, ଶତ୍ରୁତା ଜନ୍ମିଲେ ଲୋକ ଆଚରେ ମତତା । ଶାସ୍ତ୍ରଜ୍ଞ ହୋଇଲେ ମଧ୍ୟ ଜ୍ଞାନ ଯାଏ ହଜି, ତେଣୁ ସତର୍କ ରହିବ ଲୋଭକୁ ବରଜି । ୧୧୮ ।

ଜଳବିନ୍ଦୁ ନିପାତେନ କ୍ରମଶଃ ପୂର୍ଯ୍ୟତେ ଘଟଃ ।
ସ ହେତୁଃ ସର୍ବବିଦ୍ୟାନାଂ ଧର୍ମସ୍ୟ ଚ ଧନସ୍ୟ ଚ । ୧୧୯ ।

ବିନ୍ଦୁ ବିନ୍ଦୁ ପଡ଼ି ଜଳ ଘଟର ଭିତରେ, କ୍ରମେ କ୍ରମେ ପୂର୍ଣ୍ଣ ହୁଏ ଏକ ସମୟରେ । ସେହିପରି ବିଦ୍ୟା ଧର୍ମ ଧନ ସଞ୍ଚୟରେ, କ୍ରମେ କ୍ରମେ ଲଗିଯାଅ ହେ ସୁବୋଧ ନରେ । ୧୧୯ ।

ଏକଶ ଅଠର ଶ୍ଳୋକ ଚାଣକ୍ୟର ମତ,
ଏହା ଶିକ୍ଷାକର ନରେ ହୁଅନ୍ତି ପଣ୍ଡିତ ।

ମୁଦ୍ରାକର—ଶ୍ରୀ ବିଦ୍ୟାଧର ସାହୁ, ଆଲିଶା ବଜାର, କଟକ-୨